୨୦୦୮ ଭୁବନେଶ୍ୱର ପୁସ୍ତକମେଳା ରଜତ ଜୟନ୍ତୀ ଉପଲକ୍ଷେ

# ଗଳ୍ପ ସଂକଳନ



ବିଭୂତି ପଟ୍ଟନାୟକ
ବିଜୟ କୃଷ୍ଣ ମହାନ୍ତି
ଦେବପ୍ରସାଦ ଦାଶ
ଯୁଗଳକିଶୋର ଦତ୍ତ
କ୍ଷୀରୋଦ ଦାସ
ରଞ୍ଜନ କୁମାର ସାହୁ

ସଂପାଦନା :
ଯୁଗଳ କିଶୋର ଦତ୍ତ

ପାଞ୍ଚ ଟଙ୍କା

୨୦୦୮ - ପଞ୍ଚବିଂଶ ଭୁବନେଶ୍ୱର ପୁସ୍ତକ ମେଳା ଉପଲକ୍ଷେ

# ଗଳ୍ପ ସଂକଳନ

ଏ ସଂଖ୍ୟାରେ

ବିଭୂତି ପଟ୍ଟନାୟକ
ବିଜୟ କୃଷ୍ଣ ମହାନ୍ତି
ଦେବପ୍ରସାଦ ଦାଶ
ଯୁଗଳକିଶୋର ଦତ୍ତ
କ୍ଷୀରୋଦ ଦାସ
ରଞ୍ଜନ କୁମାର ସାହୁ

ସମ୍ପାଦନା
ଯୁଗଳ କିଶୋର ଦତ୍ତ

# ଶେଷ ପାପ

**ବିଭୂତି ପଟ୍ଟନାୟକ**

ଛୁଟି ଘଣ୍ଟା ବାଜିଗଲା । ସକାଳୁଆ ସ୍କୁଲ୍ । ଏଇ ଅଳ୍ପ ସମୟ ଆଗରୁ ଅସରାଏ ବର୍ଷା ହୋଇ ଛାଡ଼ିଯାଇଥିଲା । ତଥାପି ସରୁ ଚିନି ଦାନା ପରି ବିନ୍ଦୁ ବିନ୍ଦୁ ବର୍ଷାଜଳ ରୌଦ୍ରସ୍ନାତ ଆକାଶରୁ ବାସୀ ଫୁଲ ଭଳି ଝରିପଡୁଥିଲା ।

ଦିନ ଏଗାରଟା ।

ଗୋଠ ଫିଟା ଗୋରୁ ଭଳି ପ୍ରାଥମିକ ବିଦ୍ୟାଳୟର ସାନ ସାନ ପୁଅ ଝିଅମାନେ ସ୍କୁଲ୍ ଘର ଭିତରୁ ବାହାରିଲେ... ।

ସଦାନନ୍ଦ ଝର୍କାବାଟେ କିଛି ସମୟ ସେଇ ଗୋଠଫିଟା, ପଘାଛିଣ୍ଡା ବାଛୁରୀମାନଙ୍କୁ ଏକ ଲୟରେ ଚାହିଁ ରହିଲା ।

ଖୁବ୍ ଅଳ୍ପ ସମୟ ମଧ୍ୟରେ ବର୍ଷା ଭିଜା ରାସ୍ତାରେ ଦ୍ରୁତ ପଦରେ କିଏ କୁଆଡେ ଚାଲିଗଲେ । କୋଳାହଳ ନିଃଶବ୍ଦ ହୋଇ ଆସିଲା । ଏକ ବ୍ୟାଧିଗ୍ରସ୍ତ ନିର୍ଜନତା ସ୍କୁଲ୍ ଘର ଖୋଳ ପଡିଆରୁ ଲମ୍ଫି ଆସି ମାସିକ ସାହିତ୍ୟ ପତ୍ରିକା 'ଲେଖା'ର କାର୍ଯ୍ୟାଳୟକୁ ଗ୍ରାସ କରିଗଲା ।

'ଲେଖା'ର ସମ୍ପାଦକ ସଦାନନ୍ଦ । ଏକ ଛୋଟ ଲେଟର ପ୍ରିଣ୍ଟିଂ ପ୍ରେସ୍‌ର ମାଲିକ । ଏଗାର ବର୍ଷ ତଳେ ସେ ଏ ପ୍ରେସ୍ କରି କିରାଣି ଚାକିରି ନକରି ସ୍ୱାଧୀନ ଭାବରେ ଜୀବିକା ନିର୍ବାହ କରିବା ପାଇଁ ସେ ଛାପାଖାନାର ମାଲିକ ହୋଇଥିଲା । ପତ୍ରିକା ପ୍ରକାଶ କରିବା ପାଇଁ ସେ ପ୍ରେସ୍ କରି ନଥିଲା । ପ୍ରେସ୍‌ର କମ୍ପୋଜିଟର, ପ୍ରୁଫ୍ ରିଡର, ମେସିନ୍‌ମ୍ୟାନ୍ ଏବଂ ବାଇଣ୍ଡରଙ୍କୁ ଦୈନିକ କାମ ଯୋଗାଇବା ପାଇଁ ସେ 'ଲେଖା' ସାହିତ୍ୟ ପତ୍ରିକା ବାହାର କରିଥିଲା ।

ସେତେବେଳେ କଲିକତାରୁ 'ଆସନ୍ତାକାଲି' ଓ କଟକରୁ କେବଳ ନିୟମିତ 'ଝଙ୍କାର' ଆଉ 'ଡଗର' ବାହାରୁଥିଲା । ଦେଶ ସ୍ୱାଧୀନ ହେଲା ପରେ ସ୍କୁଲ୍ କଲେଜ ସଂଖ୍ୟା ବଢ଼ିବା ସହିତ ନୂଆ ଲେଖକ ଲେଖିକା ଏତେ ଅଧିକ ସଂଖ୍ୟାରେ ବାହାରୁଥିଲେ ଯେ ସେମାନଙ୍କ ଲେଖା ନିୟମିତ ପ୍ରକାଶ ପାଉଥିବା ଏଇ ହାତଗଣତି କେତୋଟି ପତ୍ରିକାରେ ଜାଗା ଧରୁନଥିଲା । ଅନେକ ଉପାଦେୟ ଲେଖା ମଧ୍ୟ ସ୍ଥାନାଭାବରୁ ଅମନୋନୀତ ହୋଇ ଫେରିଆସୁଥିଲା ।

ସେଇ ଅମନୋନୀତ ଲେଖାର ଲେଖକଙ୍କ ମଧ୍ୟରେ ଥିଲା ମଧ୍ୟ ସଦାନନ୍ଦ ।

ସଦାନନ୍ଦ ଦାସ, ବି.ଏ.ର ଲେଖା ବାରମ୍ବାର ଅମନୋନୀତ ହେବା ପରେ ଲେଖକ ହେବାର ଉଚ୍ଚାକାଙ୍କ୍ଷା ଦେବୀମୂର୍ତ୍ତିକୁ କାଠଯୋଡିରେ ବିସର୍ଜନ ଦେଲା ପରି ସେ

ଆମ୍ଭାଭିମାନର ଲୁଣି ଜଳରେ ଉଜେଇଁ ଦେଇଥିଲା ।

ଲେଖକ ହେବା ବଦଳରେ ସମ୍ପାଦକ ହେବା ପାଇଁ ସେ ମନେ ମନେ ସ୍ଥିର କରିନେଇଥିଲା ।

ସେତେବେଳେ ଶସ୍ତାରେ ଏବଂ ବାକିରେ କାଗଜ ମିଳୁଥିଲା । ବ୍ଲକ୍ ତିଆରି ପଇସା ମଧ୍ୟ ପଛରେ ହେଲେ ଚଳୁଥିଲା । ଛାପାଖାନା ତ ତା'ର ନିଜର ଥିଲା ।

ପତ୍ରିକା ବାହାର କରିବା ତା' ପାଇଁ ସେଦିନ ଥିଲା ଏକ ଆନନ୍ଦଦାୟକ, ସମ୍ମାନଜନକ ବ୍ୟାପାର ।

କିନ୍ତୁ ହଠାତ୍ ଦିନେ ସକାଳୁ ଉଠି ଦେଖିଲା ତା'ର ପରିଚିତ ପୃଥିବୀ ବଦଳି ଯାଇଛି । ମଧ୍ୟ ପ୍ରାଚ୍ୟର ତେଲଖଣିରେ ନିଆଁ ଲାଗିଯାଇଛି । ପେଟ୍ରୋଲ ଏବଂ ପେଟ୍ରୋଲ୍ ଜାତ ପଦାର୍ଥର ମୂଲ୍ୟ ମାଟିରୁ ଉଠି ଆକାଶ ଛୁଇଁଛି । ମଟର ଗାଡ଼ିରୁ ଯୁଦ୍ଧ ମେସିନ୍ ସବୁ ତେଲରେ ଚାଲେ । ତୈଳର ମୂଲ୍ୟବୃଦ୍ଧି ସହିତ ଦାବାଗ୍ନି ଭଳି ସବୁ ଜିନିଷର ମୂଲ୍ୟ ଚତୁର୍ଦ୍ଦିଗ ଗ୍ରାସି ଯାଇଛି । କାଗଜର ମୂଲ୍ୟ ଦୁଇଗୁଣ । ତାହା ପୁଣି ନଗଦ ଠଣ ଠଣ ଟଙ୍କା ଗଣି ନଦେଲେ ବାକିରେ ମିଳିବା ଅସମ୍ଭବ । ଜିଙ୍କ୍‌ର ଦର ବୃଦ୍ଧି ଫଳରେ ବ୍ଲକ୍ ନିର୍ମାଣ ଖର୍ଚ୍ଚ ମଧ୍ୟ ତିନିଗୁଣ । ସବୁ ନଗଦ । ସମସ୍ତଙ୍କ ଚାହାଣିରେ ଯେପରି ଲେଖା ହୋଇଛି 'ବାକି ମାଗି ଲଜ୍ଜା ଦିଅନ୍ତୁ ନାହିଁ ।'

ସଦାନନ୍ଦର ସମସ୍ୟା ଥିଲା, ପତ୍ରିକା ଛାପା ଖର୍ଚ୍ଚ, କାଗଜ, ବ୍ଲକ୍ ସବୁ ନଗଦ ଦେଇ ବାହାର କରିବାକୁ ହେବ, କିନ୍ତୁ ଓଡ଼ିଆ ପତ୍ରିକାର ବିକ୍ରେତାମାନେ କେହି ନଗଦ ଟଙ୍କା ଦେଇ ପତ୍ରିକା ରଖିବେ ନାହିଁ । ତେଣୁ ପତ୍ରିକା ସମ୍ପାଦକକୁ ଘରୁ ଖାଇ ଘୋଡା ଆଗରେ ନାଚିବାକୁ ହେବ ।

କିନ୍ତୁ ପତ୍ରିକା ବାହାର କରିବା ଏମିତି ଏକ ନିଶା ଯେ ଯେତେ କ୍ଷତି ହେଲେ ମଧ୍ୟ ପତ୍ରିକା ବନ୍ଦ କରିଦେବା କଷ୍ଟ । ବିଶେଷ କରି 'ଲେଖା' ଭଳି ନିରୋଳା ସାହିତ୍ୟ ପତ୍ରିକା; ଯିଏ ଅନେକ ନୂତନ ଲେଖକଙ୍କୁ ଦୁଇ ବର୍ଷ ମଧ୍ୟରେ ଆଗଧାଡିର ଲେଖକଙ୍କ ସହିତ ସମାସ୍କନ୍ଦ କରିପାରିଛି ।

ପତ୍ରିକା ପ୍ରକାଶନ ବନ୍ଦ ନକରିବା ପଛରେ ତା'ର ନିଜର ମଧ୍ୟ ସ୍ୱାର୍ଥ ଥିଲା । ଏଇ କେଇବର୍ଷ ମଧ୍ୟରେ ତା'ର ପରିଚୟ, ସେ 'ଲେଖା'ର ସମ୍ପାଦକ । ତା'ର ଅନ୍ୟ କିଛି ପରିଚୟ ନାହିଁ । ପତ୍ରିକା ବନ୍ଦ ହୋଇଗଲେ ତା'ର ପରିଚୟ ମଧ୍ୟ ଲିଭିଯିବ । ତା'ପରେ ସେ କେବଳ ଏଇ ଲେଟର ପ୍ରିଣ୍ଟିଂ ପ୍ରେସ୍‌ର ମାଲିକ ଭାବରେ ବଞ୍ଚି ରହିବ ।

ନା, ସେ ତାହା କରି ପାରିବ ନାହିଁ । ସୁନୀତା ତାକୁ ତାହା କରିବାକୁ ଦେବ ନାହିଁ । କାରଣ ସେ ତାକୁ ବାହା ହୋଇଥିଲା । 'ଲେଖା'ର ସମ୍ପାଦକ ଭାବରେ ପ୍ରିଣ୍ଟିଂ ପ୍ରେସ୍‌ର ମାଲିକ ରୂପରେ ନାହିଁ । ସୁନୀତା ନିଜେ ଲେଖାଲେଖି କରେନାହିଁ । ସେ ଲେଖିକା ନୁହେଁ ; କିନ୍ତୁ ଉଚ୍ଚକୋଟୀର ପାଠିକା । 'ଲେଖା'କୁ ବଞ୍ଚାଇ ରଖିବାରେ ତା'ର ମଧ୍ୟ କିଛି ଭାଗ ଅଛି । ମାତୃସ୍ନେହରେ ସେ ତା'ର ସଞ୍ଚୟରୁ ବେଶ୍ କିଛି ଟଙ୍କା ତାକୁ

ଧାର୍ ଦେଇ ଆଉ ଫେରସ୍ତ ମାଗି ନାହିଁ ।

ଗତ କେତେ ବର୍ଷ ହେଲା ସେ 'ଲେଖା'କୁ ଆତ୍ମ-ନିର୍ଭରଶୀଳ କରିବା ପାଇଁ ନୂତନ ଲେଖକ ଲେଖିକାଙ୍କ ଲେଖାକୁ ଘସିମାଜି ଚିକ୍ ଚିକ୍ କରି ଛାପିବା ଅପେକ୍ଷା ପ୍ରତିଷ୍ଠିତ ଖ୍ୟାତନାମା ଲେଖକ ଲେଖିକାମାନଙ୍କ ଲେଖା ଅବିକଳ ଛାପିଛି । ପ୍ରତିବାଦ କରିଛି ସୁନୀତା । ଏ କ'ଣ କରୁଛ ? 'ଝଙ୍କାର', 'ଡଗର'ର ଲେଖକମାନେ 'ଲେଖା'ର ଓଜନ ବଢ଼ାଇ ଚାଲିଛନ୍ତି ; ନୂତନ ଲେଖକ ଲେଖିକା କାହାନ୍ତି ? ସେଇ ନୂଆ ଲେଖକ ଲେଖିକାମାନଙ୍କ କଞ୍ଚା ହାତର ସର୍ଜନା ତ ତମର ଅଳଙ୍କାର ଥିଲା ।

ଥିଲା, ଆଉ କଞ୍ଚାହାତରେ କୌଣସି କାରୁକାର୍ଯ୍ୟ ହୋଇପାରୁ ନାହିଁ । ବର୍ତ୍ତମାନର ନୂତନ ଲେଖକ ଲେଖିକାମାନେ ଦିଆସିଲି କାଠି ଭଳି ଥରେ ମାତ୍ର ଜଳି ଉଠି ଲିଭି ଯାଆନ୍ତି । ଗୋଟିଏ ଦୁଇଟି ଲେଖା ପରେ ଆଉ ଖିଆଲି ଖୁସିରେ ଯେଉଁ ଲେଖା ହେଲା- ତାହା ଅପାଠ୍ୟ ।

କିନ୍ତୁ ଏଇ 'ଲେଖା'ରେ ଯେଉଁମାନଙ୍କ ପ୍ରଥମ ଲେଖା ଛପା ହୋଇଥିଲା, ସେମାନେ ତ ବର୍ତ୍ତମାନ ଓଡ଼ିଶାର ସବୁ ସମ୍ଭ୍ରାନ୍ତ ପତ୍ରିକାରେ ଲେଖୁଛନ୍ତି । ସେମାନଙ୍କ ଲେଖା ଛାପୁନ କାହିଁକି ? ଏ ତଥାକଥିତ ଖ୍ୟାତନାମା ଲେଖକ ଲେଖିକାଙ୍କ ଲେଖାରେ ଅଛି କ'ଣ ?

ସେମାନଙ୍କ ଲେଖାରେ କିଛି ଥାଉ କି ନଥାଉ ସେମାନଙ୍କର ନାମର ମୂଲ୍ୟ ଅଛି । ସୂଚୀପତ୍ରରେ ସେମାନଙ୍କର ନାମ ଥିଲେ ଏଜେଣ୍ଟମାନେ ଅଧିକ କପିର ଅର୍ଡର ଦିଅନ୍ତି । ପଇସା ବାକି ରଖନ୍ତି ନାହିଁ । ଓଲ୍ଡ ଇଜ୍ ଗୋଲ୍ଡ । ଅନ୍ତତଃ ସାହିତ୍ୟ କ୍ଷେତ୍ରରେ ।

ସଦାନନ୍ଦ ସିଗାରେଟ୍ ଟାଣୁଥିଲା । ଆଉ ପଛ କଥା ଭାବୁଥିଲା । ହଠାତ୍ ତା' ତଣ୍ଟିରେ ଧୂଆଁର ଧାସ ଲାଗି କାଶ ହେଲା । ସିରାଜ୍ ଦୌଡ଼ି ଆସି ପଚାରିଲା-ସାର୍ ! ପାଣି ଗ୍ଲାସ୍ ଦେବି ।

ସିଗାରେଟ୍ ଧୂଆଁ ଲାଗି ତଣ୍ଟିରେ ଲାଗିଲେ ସେ ପାଣି ପିଏ ନାହିଁ । ଦୁଇ ଚାରି ଥର ଗଳା ଖଙ୍କାର ଝାଡ଼ି ଦେଲେ ସବୁ ଠିକ୍ ହୋଇଯାଏ ।

ଆଜି କାଲି ବଡ଼ ବଡ଼ ଲେଖକ ଲେଖିକାମାନେ 'ଲେଖା' ପାଇଁ ସହଜରେ ଲେଖା ଦିଅନ୍ତି ନାହିଁ, ପାରିତୋଷିକ ଦେଲେ ମଧ୍ୟ ।

କାରଣ ଓଡ଼ିଆ ସାହିତ୍ୟରେ ବିପ୍ଳବ ହୋଇଥାଉ କି ନଥାଉ ଓଡ଼ିଆ ମୁଦ୍ରଣ ଜଗତରେ ଗୋଟାଏ ବଡ଼ ଧରଣର ବିପ୍ଳବ ଘଟିଯାଇଛି । ଅଫ୍‌ସେଟ୍ ପ୍ରିଣ୍ଟିଂ, ଲେଟର ପ୍ରିଣ୍ଟିଂ ପ୍ରେସ୍‌ର ଖଣ୍ଡା ଅକ୍ଷରର ଛାପାକୁ ମାଇଲ୍ ମାଇଲ୍ ପଛରେ ପକାଇ ଦେଇଛି । କଲର୍ ଅଫ୍‌ସେଟ୍‌ରେ ଛପା ହୋଇଥିବା ପତ୍ରିକାର ଲୋକପ୍ରିୟତା ଏତେ ବଢ଼ି ଯାଇଛି ଯେ ଲେଟର ପ୍ରିଣ୍ଟିଂ ପ୍ରେସ୍‌ର ଭଙ୍ଗା ଅକ୍ଷରରେ ଛାପା ପତ୍ରିକାରେ ବଡ଼ ଲେଖକମାନେ ଲେଖା ଦେବାକୁ ଅପମାନଜନକ ମନେ କରୁଛନ୍ତି ।

ବ୍ୟାଙ୍କରୁ ଲୋନ୍ ନେଇ ଅଫ୍‌ସେଟ୍ ମେସିନ୍ ଆଣିବ ବୋଲି ଅନେକ ଥର ଭାବିଛି

ସଦାନନ୍ଦ । କିନ୍ତୁ ଏ ଲେଟର ପ୍ରିଣ୍ଟିଂ ପ୍ରେସ୍ ଏବଂ ଏଥିରେ କାମ କରୁଥିବା ପୁରୁଣା କର୍ମଚାରୀମାନଙ୍କ କଥା ଭାବି ଅଫ୍‌ସେଟ୍ ଭାବନା ମନରୁ ବାତିଲ କରିଦେଇଛି ।

ଯଦୁ ଆଉ ମଧୁ । ତା' ପ୍ରେସ୍‌ର ଦୁଇ ଅଭିଜ୍ଞ କମ୍ପୋଜିଟର । କପିଳ-ବିନୋଦ-କଳା ଟାଇପ୍ ନେଇ ଗତ ୧୭ ବର୍ଷ ହେଲା ସେମାନେ ଫର୍ମା ଫର୍ମା ଅକ୍ଷର ଖଞ୍ଜି ଆସୁଛନ୍ତି । ଟାଇପ୍ ଫାଉଣ୍ଡେରିର ମାଲିକ ନାମ ଅନୁସାରେ ଓଡ଼ିଆ ଅକ୍ଷରର ନାମ । ବଡ଼ ଟାଇପ୍ କପିଳ, ତା'ଠାରୁ ସାନ ଅକ୍ଷରର ନାମ ବିନୋଦ । ଆଉ ବୋଲ୍ଡ ବାର ପଏଣ୍ଟ୍ ଟାଇପ୍ ହେଲା କଳା । ଗତ ସତର ବର୍ଷ ହେଲା ସେମାନେ ଏଇ କପିଳ-ବିନୋଦ-କଳା ଆଉ ବାର୍ ପଏଣ୍ଟ୍‌କୁ ଖଞ୍ଜି ଖଞ୍ଜି ହଜାର ହଜାର ଫର୍ମା ବହି ଆଉ ପତ୍ରିକା ଛାପି ଚାଲିଛନ୍ତି । ପରିଣତ ବୟସରେ ଡିଟିପି ମେସିନ୍ ଆଣି ବିଦା କରିଦେଲେ ସେ ଦୁହେଁ ଯିବେ କୁଆଡ଼େ ? ଖାଇବେ କ'ଣ ? ବଞ୍ଚିବେ କେମିତି ? ସେଇ ସମସ୍ୟା ମଧ୍ୟ ବାଇଣ୍ଡର ସିରାଜ୍ ଆଉ ମେସିନ୍‌ମ୍ୟାନ୍ ରଘୁ-ଏଇମାନଙ୍କୁ ନେଇ ତା'ର ସଂସାର । ଅଫ୍‌ସେଟ୍ ମେସିନ୍ ଆଣିଲେ ଏମାନଙ୍କୁ ବିଦା କରିଦେବାକୁ ପଡ଼ିବ । ଭାଙ୍ଗିଯିବ ତା'ର ସତର ବର୍ଷର ସଂସାର ।

ସିଗାରେଟ୍‌ଟା ଜଳି ଜଳି ଆଙ୍ଗୁଠି ପାଖକୁ ଚାଲି ଆସିଥିଲା । ସିଗାରେଟ୍‌ରେ ଶେଷ ଟାଣ ଦେଇ ସଦାନନ୍ଦ ୱିଣ୍ଡୋ ବାଟେ ଅବଶିଷ୍ଟାଂଶ ବାହାରକୁ ଫିଙ୍ଗି ଦେଲା । ବର୍ଷା ଅନେକ ବେଳୁ ଛାଡ଼ି ଯାଇଛି । ଆକାଶ ଉଜ୍ଜ୍ୱଳ ଦେଖାଯାଉଚି । ଡେଣା ଝାଡ଼ି ଓଦା ଜୁବୁଥୁବୁ ଗୋଟିକିଆ କାଉଟାଏ ତଥାପି ସ୍କୁଲ୍ ଘର ଟାଇଲି ଛାତ ଉପରେ ବସି ରହିଛି ।

ଆଜି ପ୍ରେସ୍‌ରେ କିଛି କାମ ନାହିଁ । କମ୍ପୋଜିଟର ମଧୁ ଆଉ ଯଦୁ ଦୁଇ ଜଣ ଯାକ ଛୁଟିରେ । ଜଣକୁ ଜ୍ୱର, ଆଉ ଜଣେ ଯାଇଛି ଶ୍ୱଶୁର ଘର । ମେସିନ୍‌ମ୍ୟାନ୍ ଅବକାଶ ହାଜିରା ପକାଇ ଚାଲିଯିବାକୁ ବସିଥିଲା । ଫର୍ମା କମ୍ପୋଜ୍ ନହେଲେ ସେ ମେସିନ୍‌ରେ ଛାପିବ କ'ଣ ? କିନ୍ତୁ ସେ ତାକୁ ଅଟକାଇ ଦେଇଛି । ଡାକଘରୁ ଡାକ ଆଣିବାକୁ ସେ ପଠାଇଛି । ଡାକ ଦେଖିଦେଲେ ସେ ମଧ୍ୟ ପ୍ରେସ୍ ବନ୍ଦ କରି ଚାଲିଯିବ ।

ମେସିନ୍‌ମ୍ୟାନ୍ ଅବକାଶ ତା'ର ସାହିତ୍ୟ ପତ୍ରିକାର ଅନ୍ୟତମ ସହକାରୀ । ପତ୍ରିକା ବାହାରିଲେ ତାକୁ ପ୍ୟାକେଟ୍ କରି ସେ ନେଇ ଡାକଘରେ ଜମା ଦେଇ ଆସେ । ପ୍ରେସ୍ ଓ ପତ୍ରିକା ଆରମ୍ଭରୁ ସେ ତା' ସହିତ ସୁଖରେ ଦୁଃଖରେ ରହିଆସିଛି । ବେଶୀ ଟଙ୍କାର ଲୋଭ ଦେଖାଇ ବଡ଼ ପ୍ରେସ୍ ମାଲିକମାନେ ତାକୁ ହାତ ଠାରିଥିଲେ ବି ସେ ତାକୁ ଛାଡ଼ି ଯାଇନାହିଁ ।

ଏପର୍ଯ୍ୟନ୍ତ ଡାକ ନେଇ ଫେରିନାହିଁ ଅବକାଶ ।

ଡାକକୁ ଉତ୍କଣ୍ଠିତ ଭାବରେ ଅପେକ୍ଷା କରି ବସି ରହିଛି ସଦାନନ୍ଦ ।

ପ୍ରତିଦିନ ଡାକକୁ ସେ ଏମିତି ଉତ୍କଣ୍ଠାର ସହ ଅପେକ୍ଷା କରିଥାଏ । ଆଶା କରି ବସିଥାଏ ସେଦିନ ଡାକରେ ହୁଏତ ଏମିତି ଗୋଟାଏ ନୂଆ ଧରଣର ଗଳ୍ପ ଆସିଥିବ

ଯାହାକୁ ପଢ଼ିଦେଲେ ପରମ ତୃପ୍ତିରେ ମନ ଭରିଯିବ ଆଉ ସେ ମନେ ମନେ ଚିତ୍କାର କରିଉଠିବ-

ୟୁରୋକ୍କା- ୟୁରୋକ୍କା !

ଏଇଭଳି ଅନେକ କ୍ଲାନ୍ତିକର ମଧ୍ୟାହ୍ନରେ ଥରେ ଥରେ ଗୋଟିଏ ଗୋଟିଏ ଭଲ ଲେଖା ଆସିଗଲେ ତା'ର ମନ ସତେଜ ହୋଇଉଠେ । ପ୍ରେସ୍‌ର ଆର୍ଥିକ ଦୂରବସ୍ଥା ଆଉ ପ୍ରତିଷ୍ଠିତ ଲେଖକମାନଙ୍କ ଅସହଯୋଗ କଥା ଭୁଲି ସେ ପୁଣି ନୂତନ ଉତ୍ସାହରେ 'ଲେଖା'କୁ ସଜାଡ଼ି ଠିକ୍ ସମୟରେ ପ୍ରକାଶ କରିବାରେ ଲାଗିଯାଏ ।

ଅବକାଶ ଡାକ ନେଇ ଆସିଲା । ଡାକରେ କୌଣସି ଲେଖା ଆସିନଥିଲା । ନଥିଲା ମଧ୍ୟ ବାର୍ଷିକ ଗ୍ରାହକ ଚାନ୍ଦା- ଖଣ୍ଡେ କୋଡ଼ିଏ ଟଙ୍କାର ଚେକ୍ । ଥିଲା ଡାକରେ ପତ୍ରିକା ପାଇନଥିବାର ତିନିଖଣ୍ଡ ଅଭିଯୋଗ ପତ୍ର ଏବଂ ପିଆଇବିର ନିଉଜ ଲେଟର ।

ଆଲମୀରାରେ ତାଲା ଦେଇ ଘାରି ଉଠିବାର ଉପକ୍ରମ କଲା ସଦାନନ୍ଦ ।

କିନ୍ତୁ ଅଫିସ୍ ବାହାରେ ପାଦ ରଖିବା ଆଗରୁ ହାଫିଜ୍ ଦୌଡ଼ି ଦୌଡ଼ି ଆସି କହିଲା- ସାର୍ ! ଜଣେ ଭଦ୍ର ମହିଳା ଦେଖା କରିବାକୁ ଆସିଛନ୍ତି-

ଚମକି ଗଲା ସଦାନନ୍ଦ । ଏ ଅବେଳରେ ତାକୁ ଦେଖା କରିବାକୁ ଜଣେ ଭଦ୍ର ମହିଳା କାହିଁକି ଆସିଛନ୍ତି ? ତା'ର ପାଉଣାଦାର ମାନଙ୍କ ମଧ୍ୟରେ କେହି ଭଦ୍ର ମହିଳା ଥିବା ଭଳି ସେଇ ମୁହୂର୍ତ୍ତରେ ତା'ର ସ୍ମରଣ ହେଉନଥିଲା ।

ଗାଡ଼ିରୁ ଓହ୍ଲାଇ ସାଙ୍ଗେ ସାଙ୍ଗେ ଜଣେ ଦୀର୍ଘାଙ୍ଗୀ ମହିଳା ଅଫିସ୍ ଭିତରକୁ ପଶି ଆସିଲେ । ଦୁଇ ହାତ ଯୋଡ଼ି ମୃଦୁ କଣ୍ଠରେ କହିଲେ-ମୁଁ ସୁନନ୍ଦା । ମିଶ୍ର ଥିଲି, ଦୁଇ ବର୍ଷ ହେଲା ଆଚାର୍ଯ୍ୟ ହୋଇଛି । ମୋ ସ୍ୱାମୀ ଗୋଟିଏ ମଲ୍‌ଟି ନ୍ୟାସ୍‌ନାଲ୍ କମ୍ପାନୀର ଏମ୍.ଡି ; ନାମ ଶୁଣିଥିବେ-ଶ୍ୱେତଶୁଭ୍ର ଆଚାର୍ଯ୍ୟ ।

ସଦାନନ୍ଦ ସେ ସୁନନ୍ଦା ନାମ୍ନୀ ଭଦ୍ର ମହିଳାଙ୍କୁ ଚିହ୍ନି ପାରୁଥିଲା, ନା ଶ୍ୱେତଶୁଭ୍ର ଆଚାର୍ଯ୍ୟଙ୍କ ନାମ ଶୁଣିଛି ବୋଲି କହିପାରୁ ନଥିଲା ।

ସେ ଭଦ୍ର ମହିଳାଙ୍କୁ ବସିବା ପାଇଁ କହି କଫି ଆଣିବା ପାଇଁ ସିରାଜ୍‌କୁ ବରାଦ ଦେଲା ।

ସୁନନ୍ଦା ପ୍ରତିବାଦ କଲେ- ନା, ନା, କଫି ମୁଁ ଖାଏ ନାହିଁ । ଯଦି ମଗାଇବେ ଚିନି କମ୍, ଏକ କପ୍ ଚା' ।

ସିରାଜ୍ ଚା' ଆଣିବା ଲାଗି ଚାଲିଗଲା ପରେ ସଦାନନ୍ଦ ପଚାରିଲା – ମୋ ସହିତ କିଛି କାମ ଥିଲା ?

– ମୁଁ କାମ ନଥିଲେ ଆସି ପାଆନ୍ତି କାହିଁକି ? ମତେ ଆପଣ ଚିହ୍ନିପାରୁ ନାହାନ୍ତି ?

– ଆପଣଙ୍କ ସାଙ୍ଗରେ ଆଗରୁ କେବେ ଦେଖା ହୋଇଥିଲା ଭଳି ମନେପଡୁ ନାହିଁ ।

– ମୋ ସହିତ ଦେଖା ହୋଇନଥିଲେ ମଧ୍ୟ ମୋ ଲେଖା ସହିତ ଆପଣଙ୍କର ପରିଚୟ ଅଛି । ଛଅ ବର୍ଷ ତଳେ ପ୍ଲସ୍ ଟୁ'ରେ ପଢ଼ିଲା ବେଳେ ମୁଁ ଆପଣଙ୍କ ପତ୍ରିକା ପାଇଁ ଗଳ୍ପ ପଠାଉଥିଲି, ସେଇ ମୋର ପ୍ରଥମ

ଗଳ୍ପ । ଗଳ୍ପଟି ଆପଣ ଯତ୍ନ ସହକାରେ ଛାପିଥିଲେ ଏବଂ ସେ ଗଳ୍ପର ପ୍ରଶଂସା କରି ଯେଉଁ ଚିଠି ଆସିଥିଲା, ତାକୁ ଆପଣ ରିଡାଇରେକ୍ଟ କରି ମୋ ପାଖକୁ ପଠାଇଥିଲେ । ଲାଗ୍ ଲାଗ୍ ସାତଟା ଗଳ୍ପ ମୁଁ କଲେଜ ଛାତ୍ରୀ ଥିଲାବେଳେ, 'ଲେଖା'ରେ ଛପା ହୋଇ ମତେ ଲେଖିକାର ସ୍ୱୀକୃତି ଆଣିଦେଇଥିଲା । ପରେ 'ଲେଖା'ର ଏକ ଗଳ୍ପ ବିଶେଷାଙ୍କରେ ମୋ ଗଳ୍ପ ସହିତ ମୋ ଫଟୋ ମଧ୍ୟ ଛପା ହୋଇଥିଲା ।

ତଥାପି ନିଃସନ୍ଦେହ ହୋଇପାରୁ ନଥିଲା ସଦାନନ୍ଦ ।

ପଚାରିଲା- ଆପଣଙ୍କ ପ୍ରଥମ ପ୍ରକାଶିତ ଗଳ୍ପର ନାମ କ'ଣ ଥିଲା ?

ମୁଣ୍ଡ ତଳକୁ ପୋତି ସୁନନ୍ଦା ଉତ୍ତର ଦେଇଥିଲେ-

- ହଁ, 'ପ୍ରଥମ ପାପ' ।

ଗଳ୍ପର ନାମ ଶୁଣିବା ମାତ୍ରେ ସଦାନନ୍ଦର ଦେହରେ ଏକ ମଧୁର ଶିହରଣ ସଞ୍ଚରି ଗଲା । ମନେ ପଡ଼ିଗଲା ସେ ଗଳ୍ପର ଅଦ୍ଭୁତ ଦୁଃସାହସିକ କଥାବସ୍ତୁ । ଗଳ୍ପର ନାୟିକା ସଙ୍ଗୀତା ବାହାଘର ପୂର୍ବରୁ ତା'ର ସ୍ୱାମୀକୁ କହି ରଖିଥିଲା- ଦେଖ ମୋର ଜଣେ ପ୍ରେମିକ ଅଛନ୍ତି । ସେ ଜଣେ ଦୁଃଖୀ କବି । ତାଙ୍କୁ ଛାଡ଼ି ମୁଁ ତୁମକୁ ବାହା ହୋଇ ଯାଉଛି ବୋଲି ସେ ଭାଙ୍ଗିପଡ଼ିଛନ୍ତି । ତାଙ୍କ ସହିତ ମୋର କୌଣସି ଦିନ ଶାରୀରିକ ସମ୍ପର୍କ ନଥିଲା କି ଭବିଷ୍ୟତରେ ରହିବ ନାହିଁ । ମୁଁ ଯାହାକୁ ବାହା ହେବି କୃପଣ ଭଳି ମୁଁ ତା' ପାଇଁ ମୋର ଶାରୀରିକ ପବିତ୍ରତା ସଞ୍ଚୟ କରି ରଖିଛି । ବାହାଘର ପରେ ତମେ ମୋର ଅକ୍ଷତ କୁମାରୀ ଦେହର ଭୋଗ ଦଖଲ କରିବାର ଅଧିକାର ପାଇବ । କିନ୍ତୁ ମୋ ମନର କିଛି ଅଂଶ ଏ ପର୍ଯ୍ୟନ୍ତ ସେ କବି ଅଧିକାର କରିବସିଛି । ମନର ସେଇ ଅଧିକୃତ ଅଞ୍ଚଳକୁ ସେ କବିଙ୍କ ପାଖରୁ ମୁକ୍ତ କରି ଆଣିବା ପର୍ଯ୍ୟନ୍ତ ବାହାଘର ପରେ ମଧ୍ୟ ମଝିରେ ମଝିରେ ତାକୁ ଦେଖା କରିବି ବୋଲି ମୁଁ ତାକୁ କଥା ଦେଇଛି । ତମେ ମୋ କଥାରେ ରାଜି ?

ସଙ୍ଗୀତାର ସ୍ୱାମୀ ପ୍ରଥମେ ଖୁବ୍ ନର୍ଭସ୍ ହୋଇଯାଇଥିଲା । ଏଭଳି ସର୍ତ୍ତରେ ତାକୁ ସେ ବାହା ହୋଇପାରିବ ନାହିଁ ବୋଲି ମନା କରି ଦେବାକୁ ବସିଥିଲା । କିନ୍ତୁ ପଛରେ ସାହସ ସଞ୍ଚୟ କରି କହିଥିଲା- ଠିକ୍ ଅଛି । ବାହାଘର ପରେ ତମେ ତମର ପ୍ରେମିକ କବିକୁ ଦେଖା କରିବାକୁ ଯାଇପାର- କିନ୍ତୁ ମୋ ଦେହ ଛୁଇଁ ସତ୍ୟ କର- ତାକୁ କେବେ ତମ ଦେହକୁ ଛୁଇଁବାକୁ ଦେବ ନାହିଁ । ସଙ୍ଗୀତା ନିଜ ଭାବିସ୍ୱାମୀର ଦେହ ଛୁଇଁ ତା ଦେହକୁ କେବେ ହେଲେ ସେ ଦୁଃଖୀକବିକୁ ଛୁଇଁବାକୁ ଦେବ ନାହିଁ ବୋଲି ତ୍ରିବାର ସତ୍ୟ କରିଥିଲା ।

ସବୁ ଠିକ୍ ଚାଲିଥିଲା । ଦିନେ ସ୍ୱାମୀ ଆସି ଦେଖିଲା, ସଙ୍ଗୀତା ବାପଘରକୁ ଯିବ ବୋଲି ବାକ୍ସ ସଜଡ଼ା ସଜଡ଼ି କରି ଅପେକ୍ଷା କରିଛି ।

କ'ଣ ହେଲା ? କୁଆଡେ଼ ଯିବ ବୋଲି

ବାହାରିଛ ?

ସ୍ୱାମୀଙ୍କ କଥା ଶୁଣି ଝରଝର ହୋଇ କାନ୍ଦି ପକାଇଲା ସଙ୍ଗୀତା । କହିଲା- ତମକୁ ଯେଉଁ କଥା ଦେଇଥିଲି, ସେ କଥା ମୁଁ ରଖି ପାରିଲି ନାହିଁ । ସେ ଦୁଃଖୀ କବି ମୋ ଦେହକୁ ଛୁଇଁ ଅପବିତ୍ର କରିଦେଇଛି । ମୁଁ ଆଉ ଏ ଅପବିତ୍ର ଦେହ ମନ ନେଇ ତମ ବେକରେ ବୋଝ ହୋଇ ଝୁଲି ରହିବାକୁ ଚାହେଁ ନାହିଁ ।

ସ୍ୱାମୀ ଏଥର ଦୁଃଖରେ ଭାଙ୍ଗିପଡ଼ି ପଚାରିଲା-

- ସେ ସ୍କାଉଣ୍ଡ୍ରାଲ୍ କ'ଣ ଜୋର୍ କରି ତମ ଦେହକୁ ଅପବିତ୍ର କରିଦେଲା ?

ସଙ୍ଗୀତା ଦୃଷ୍ଟି ଆନତ କରି ମୃଦୁ କଣ୍ଠରେ ଉତ୍ତର ଦେଇଥିଲା- ନା, ଏ ପ୍ରଥମ ପାପ ପାଇଁ ନିଜେ ମୁଁ ଦାୟୀ । ମୁଁ ନିଜକୁ ତା' ପାଖରେ ଯାଚି ଦେଇ ଦେଇଛି । ସେ ଆଦୌ ବଳ ପ୍ରୟୋଗ କରିନାହିଁ ।

ସଙ୍ଗୀତାର କଥା ଶୁଣି ତା' ସ୍ୱାମୀ ସ୍ତ୍ରୀର ଗାଲ ବଦଳରେ ନିଜ ଗାଲରେ ଏକ ଶକ୍ତ ଥାପ୍ପଡ କଷି ଦେଇଥିଲା ।

ହୁଁ- ଏଇ ଗପଟା ଛାପା ହେବା ପରେ 'ଲେଖା'ର ବିକ୍ରି ବଢ଼ିଯାଇଥିଲା । ପ୍ରଥମ ଗଳ୍ପ ଭଳି ହୋଇ ନଥିଲେ ମଧ୍ୟ ସୁନନ୍ଦା ମିଶ୍ରର ଆଉ କେତୋଟି ଗଳ୍ପ ସେ 'ଲେଖା'ରେ ଛାପିଥିଲା ।

ସୁନନ୍ଦା ଆଚାର୍ଯ୍ୟ ତା'ର ଧ୍ୟାନ ଭଗ୍ନ କରି କହିଲେ-

- ବାହା ହେଲା ପରେ ଗତ ଦୁଇ ବର୍ଷ ମଧ୍ୟରେ ମୁଁ 'ଲେଖା'କୁ ଚାରିଟା ଗଳ୍ପ ପଠାଇଛି । କିନ୍ତୁ ଗୋଟିଏ ହେଲେ ଗଳ୍ପ ଆପଣ ଛାପି ନାହାନ୍ତି ।

ସଦାନନ୍ଦ ପଚାରିଲା- ଗଳ୍ପ ଭଲ ହୋଇଥିଲେ ନିଶ୍ଚୟ ଛପା ହୋଇଥାଆନ୍ତା । ଆପଣ କ'ଣ ଭାବୁଛନ୍ତି, କୌଣସି ସମ୍ପାଦକ ଭଲ ଲେଖାକୁ ନଛାପି ଚାପି ରଖିଦେଇ ପାରେ ?

ସୁନନ୍ଦା ଏକ ରହସ୍ୟମୟ, ମାୟାବୀ ହସର ଆଲୋକରେ ନିଜ ମୁହଁକୁ ଉଦ୍ଭାସିତ କରି କହିଲେ-

- କୁମାରୀ ଲେଖିକାଙ୍କ ଲେଖା ଛାପିବା ପାଇଁ ସମ୍ପାଦକମାନଙ୍କ ଆଗ୍ରହ ଯେତେ ବେଶି, ବିବାହିତା ଲେଖିକାଙ୍କ ଲେଖା ଛାପିବା ଲାଗି ସେତିକି କୁଣ୍ଠିତ ବୋଲି ଶୁଣିଛି । ସତ କି ମିଛ ଠିକ୍ ଜାଣେ ନାହିଁ ।

ଭଦ୍ର ମହିଳାଙ୍କ କଥା ଶୁଣି ନିଜକୁ ଅପମାନିତ ମନେକଲା ସଦାନନ୍ଦ । ଅମନୋନୀତ ଗଳ୍ପ ଫାଇଲ୍ କାଢ଼ି ସୁନନ୍ଦା ଆଚାର୍ଯ୍ୟଙ୍କ ଚାରୋଟି ଗଳ୍ପ କାଢ଼ି ପଢ଼ିଲା । ଏକଦମ୍ ଅପାଠ୍ୟ ଗଳ୍ପ । ଭାଷା ଦୁର୍ବଳ କଥାବସ୍ତୁ ବିଶେଷତ୍ୱ ବିହୀନ ।

ଭଦ୍ର ମହିଳା ଏଥର ନିଜର ଶେଷ କାର୍ଡ ଖେଳିବାକୁ ନିଜ ବ୍ୟାଗରୁ ପଚାଶ ହଜାର ଟଙ୍କାର ଏକ ଚେକ୍ ଏବଂ ଗୋଟିଏ ଟେଲିଭିଜନ୍ କମ୍ପାନୀର ବିଜ୍ଞାପନ କାଢ଼ି ଟେବୁଲ୍ ଉପରେ ଥୋଇ କହିଲେ- ଆଗଭଳି ଭଲ ଗଳ୍ପ ଆଉ ମୁଁ ଲେଖିପାରୁ ନାହିଁ । ଅଥଚ 'ଲେଖା'ରେ ପ୍ରକାଶିତ ୩ଟି ଗଳ୍ପ ପଢ଼ି ଶ୍ୱେତଶୁଭ୍ର ମୋ ପ୍ରେମରେ ପଡିଥିଲେ ।

ବିନା ଯୌତୁକରେ ବାହା ହୋଇଥିଲେ । ଜଣେ ବିଶିଷ୍ଟ ଗାଳ୍ପିକାଙ୍କୁ ବାହା ହୋଇଥିବାରୁ ଅହଙ୍କାର ତାଙ୍କର ଥିଲା । କିନ୍ତୁ ଚାରିଟି ଗଳ୍ପରୁ ଗୋଟିଏ ହେଲେ ଗଳ୍ପ ଆପଣ ନଛାପିବାରୁ ସେ ଅହଙ୍କାର ତାଙ୍କର ଭୂଲୁଣ୍ଠିତ ହୋଇଛି । ଅବିବାହିତ ବୟସର 'ଲେଖା'ରେ ପ୍ରକାଶିତ ଗଳ୍ପ ମୁଁ ଲେଖିଥିଲି ବୋଲି ତାଙ୍କର ସନ୍ଦେହ ହୋଇଛି । ଆପଣ ଦୟାକରି ଚାରିଟା ନହେଲେ ଗୋଟାଏ ଗଳ୍ପ ଛାପନ୍ତୁ । ସ୍ୱାମୀଙ୍କ ମନରୁ ସନ୍ଦେହର କଳା ମେଘ ଘୁଞ୍ଚିଯାଉ । ଏଇ ରଖନ୍ତୁ- ଦଶ ହଜାର ଟଙ୍କାର ବିଜ୍ଞାପନ । ବର୍ଷକୁ ଦୁଇଟା ବିଜ୍ଞାପନ ଦେବେ ବୋଲି ସ୍ୱାମୀ କଥା ଦେଇଛନ୍ତି । ଏଇଟା ଲାଞ୍ଚ ନୁହେଁ- 'ଲେଖା' ପାଖରେ ମୁଁ ଋଣୀ- ଏହା ସେହି ଋଣ ପରିଶୋଧର ପ୍ରଥମ କିସ୍ତି । କିଛି ପାଇବାକୁ ହେଲେ କିଛି ଦେବାକୁ ହୁଏ । ସ୍ୱାମୀଙ୍କ କମ୍ପାନୀର ବିଜ୍ଞାପନ ଛଡା ମୁଁ ଆଉ ଅଧିକ କ'ଣ ଦେଇ ପାରିବି ?

ସିରାଜ ଚା' ନେଇ ଆସିଥିଲା ।

ଢୋକେ ମାତ୍ର ଚା' ପିଇ ଭଦ୍ର ମହିଳା ଉଠି ନମସ୍କାର କଲେ । ଚାଲିଗଲେ । ସେ ଦଶ ହଜାର ଟଙ୍କାର ଚେକ୍ ଏବଂ ବିଜ୍ଞାପନ ପାଠ ଟେବୁଲ୍ ଉପରେ ମୁହଁ ମାଡି ପଡିଥିଲା । ସେ ଚେକ୍ ଫେରାଇ ଦେବା ଲାଗି ଋଣଗ୍ରସ୍ତ ସମ୍ପାଦକ ସଦାନନ୍ଦ ସାହସ କରିପାରି ନଥିଲା ।

ତା ପରବର୍ତ୍ତୀ ମାସ 'ଲେଖା'ରେ ସୁନନ୍ଦା ଆଚାର୍ଯ୍ୟଙ୍କ ଅମନୋନୀତ ଗଳ୍ପ ପ୍ରଥମ ଗଳ୍ପ ଭାବରେ ପ୍ରକାଶିତ ହୋଇଥିଲା । ଲେଖାର ପ୍ରଥମ ପୃଷ୍ଠାରେ ଛପା ହୋଇଥିଲା, 'ଏହା ହେଉଛି 'ଲେଖା'ର ସପ୍ତଦଶ ବର୍ଷ ଶେଷ ସଂଖ୍ୟା । 'ଲେଖା' ପ୍ରେସ୍ ବିକ୍ରି ହୋଇ ଯାଉଥିବାରୁ ଆଉ ଲେଖା ପ୍ରକାଶିତ ହେବ ନାହିଁ ।'

ଘୋଷଣାଟି ପଢ଼ି ସୁନୀତା ଚମକି ଗଲା । ସଦାନନ୍ଦକୁ ପଚାରିଲା- ତମେ ଏ କ'ଣ କଲ ? 'ଲେଖା' ପ୍ରକାଶନ ବନ୍ଦ କରିଦେଲ ।

- ତା' ଛଡା ଅନ୍ୟ କିଛି ଉପାୟ ନଥିଲା । ମୁଁ ଅମନୋନୀତ ଲେଖା ଛାପିବା ପାଇଁ 'ଲେଖା' ପ୍ରକାଶ କରିନଥିଲି । ଅମନୋନୀତ ଲେଖା ଛାପିବା ଲାଗି ଦଶ ହଜାର ଟଙ୍କାର ବିଜ୍ଞାପନ ନେବା ପାପ । ଏହା ମୋର ଶେଷ ପାପ- ଆଉ ପାପର ସଂଖ୍ୟା ବଢ଼ାଇବା ପାଇଁ ମୁଁ 'ଲେଖା' ପ୍ରକାଶ କରିବାକୁ ଚାହେଁ ନାହିଁ ସୁନୀତା ।'

କଥା କହିଲା ବେଳେ ସଦାନନ୍ଦର କଣ୍ଠ ଥରୁଥିଲା । ଦେହ ଥରୁଥିଲା, କିନ୍ତୁ ଆଖିରୁ ଲୁହ ଝରୁ ନଥିଲା, କଣ୍ଠ ବାଷ୍ପରୁଦ୍ଧ ହୋଇଯାଉ ନଥିଲା । ନିଜ ପାଖରେ ନିଜେ ହାରି ଯାଇଥିଲା ସଦାନନ୍ଦ ।



# ଆବର୍ତ୍ତ

**ବିଜୟ କୃଷ୍ଣ ମହାନ୍ତି**

ମୁଁ ସେତେବେଳେ ଚାକିରୀରେ ଥାଏ ଓ ରହୁଥାଏ ଭୁବନେଶ୍ୱରସ୍ଥ ଚାରି ନମ୍ବର ୟୁନିଟ୍ ପୋଷ୍ଟାଲ କଲୋନୀରେ ।

ଫ୍ଲାଟ ଘର ଦ୍ୱିତଳ ।

ତଳ ମହଲାରେ ମୁଁ ଥାଏ, ଉପର ମହଲାରେ ରହୁଥାନ୍ତି ମୋ ଅଫିସ୍‌ର ବନ୍ଧୁ ଶ୍ରୀନିବାସନ୍ । ଖୁବ୍ ଅନ୍ତରଙ୍ଗ ଥିଲେ ସେ ମୋର । ଖୁବ୍ ସରଳ ଓ ଅମାୟିକ ବ୍ୟକ୍ତି ।

ଦୀର୍ଘ ଆଠବର୍ଷ ଧରି ତାଙ୍କର ମାତା ରୁକ୍ମିଣୀ ଦେବୀ ପକ୍ଷାଘାତ ବ୍ୟାଧିରେ ଶଯ୍ୟାଶାୟିନୀ ।

ଆରୋଗ୍ୟ ହେବାର କୌଣସି ସମ୍ଭାବନା ନାହିଁ, ଚାଲିଯା'ନ୍ତେ ହେଲେ ।

ସମସ୍ତଙ୍କ ଚିନ୍ତାରେ ସେଇ ଗୋଟିଏ କଥା । ମାତ୍ର କାହାରି ଇଚ୍ଛାରେ କିଛି ହୁଏନି, ସେଇ ଜଣକର ଇଚ୍ଛାହିଁ କାର୍ଯ୍ୟକାରୀ ହୁଏ ।

ପ୍ରାରବ୍ଧ ଶେଷ ନ ହେବା ଯାଏ, ମୃତ୍ୟୁ ସ୍ପର୍ଶରେ ରୁକ୍ମିଣୀ ଦେବୀ ଯନ୍ତ୍ରଣାରୁ ମୁକ୍ତି ପାଇବେ କିପରି ?

ଶ୍ରୀନିବାସନ୍ ଓ ତାଙ୍କ ପତ୍ନୀ ଲକ୍ଷ୍ମୀଙ୍କର ଅକୁଣ୍ଠିତ ସେବା ଲକ୍ଷ୍ୟ କରିବାର କଥା । ପୁଅ ଝିଅ ଦୁଇଟି ସେମାନଙ୍କର । ପିଲାମାନଙ୍କର ସେବା ମନୋବୃତ୍ତି ଠିକ୍ ବାପାମାଆଙ୍କ ଭଳି । ଆଦର୍ଶ ପରିବାରଟିଏ ।

ବୃଦ୍ଧା ସବୁବେଳେ କ୍ଷୋଭ ପ୍ରକାଶ କରି ପିଲାମାନଙ୍କୁ କହନ୍ତି, "ମୁଁ ଘାଣ୍ଟି ହେଉଚି, ତୁମମାନଙ୍କୁ ବି ଘାଣ୍ଟୁଚି ।"

ଶ୍ରୀନିବାସନ୍ ମାଆଙ୍କ ମୁହଁରେ ହାତ ଦେଇ ଦିଅନ୍ତି, "ଛି, ମା, ସେମିତି କାହିଁକି କହୁଛ ? ତୁମର ସେବା କରିବାର ସୌଭାଗ୍ୟ ଭଗବାନ ଆମ୍ଭମାନଙ୍କୁ ଦେଇଛନ୍ତି । ଏ ଭାଗ୍ୟ କେତେଜଣଙ୍କୁ ମିଳେ ?"

ଏ ସବୁ ସତ୍ତ୍ୱେ ବୃଦ୍ଧାଙ୍କର ଶାରୀରିକ ଯନ୍ତ୍ରଣା ଯେ ଅସହ୍ୟ । ରହି ରହି ତାଙ୍କର ସେ କି କରୁଣ ଚିତ୍କାର ।

ମୁଁ ଓ ମୋହର ପତ୍ନୀ ଅରୁଣା ପ୍ରତ୍ୟହ ଯାଉ ବୃଦ୍ଧାଙ୍କୁ ଦେଖିବାକୁ । ଆମକୁ ଦେଖିଲେ ବି ଆଖିରୁ ଦୁଇଧାର ଲୁହ ଗଡ଼ିପଡ଼େ । ସେଇ ଲୁହରେ ହିଁ ତାଙ୍କର ଅବ୍ୟକ୍ତ ବ୍ୟଥା ବ୍ୟକ୍ତ କରନ୍ତି ସେ । ଅରୁଣା ତାଙ୍କ ଆଖିରୁ ଲୁହ ପୋଛିଦେଲେ, ସେ ଫୁଲି ଫୁଲି କାନ୍ଦି ଉଠନ୍ତି ।

ରୁକ୍ମିଣୀ ଦେବୀଙ୍କର ଆଉ ଜଣେ ସେବା କରେ ପ୍ରାଣଦେଇ, ସେ ହେଲା ତାଙ୍କ ଘରର ଠିକା ସ୍ତ୍ରୀ ଲୋକଟି, କମଳା । ଦୁଇବେଳା ତାଙ୍କ ଘରେ କାମ କରେ । ସତ କହିବାକୁ ଗଲେ ଦିନର ଅଧିକାଂଶ ସମୟ ଘରେ ସେ ଥାଏ । ସବୁ ବୋଲହାକ କରେ । ତା' କାର୍ଯ୍ୟର ତତ୍‌ପରତା ଲକ୍ଷ୍ୟ କଲେ ମନେ

ହୁଏ, ସେ ଯେପରି ସେ ଘରର ଜଣେ । ଦୀର୍ଘ ପଞ୍ଚବର୍ଷ ସେ ଘରେ ରହିଯିବା ଫଳରେ ସେ ପରିବାର ପାଇଁ ଯଥେଷ୍ଟ ମମତା ଆସି ଯାଇଥିଲା ତା'ର ।

ଦି' ପ୍ରାଣୀ ସେମାନେ । ସ୍ୱାମୀ କୁବେର ରିକ୍ସା ଟାଣେ । ସେମାନେ ନିଃସନ୍ତାନ । କମଳା ତେଣୁ ଯଥେଷ୍ଟ ସମୟ ଦେଇପାରେ ସେ ଘର ପାଇଁ । ତା' ହାତରୁ କାମ କେତେବେଳେ ଛାଡ଼ି ନାହିଁ । ଶ୍ରୀନିବାସନ୍‌ଙ୍କ ପିଲା ଦୁହିଁଙ୍କୁ ନିଜର ସନ୍ତାନ ଭଳି ଦେଖେ ।

ରୁକ୍ମିଣୀ ଦେବିଙ୍କର ଏତେ ଟିକେ ଯେପରି ଅଯତ୍ନ ନ ହୁଏ, ସେଥିପ୍ରତି ସବୁବେଳେ ନିଘା ଥାଏ ତା'ର ।

କମଳା ସେ ଘରେ ଦି'ବେଳା ଖାଏ । କୁବେର ପାଇଁ ଟିଫିନ୍ କେରିୟରରେ ଖାଇବା ନେଇଯାଏ । ଏଇ ନିର୍ଦ୍ଦେଶ ଥିଲ ଲକ୍ଷ୍ମୀଙ୍କର ତା' ପ୍ରତି ।

ଲକ୍ଷ୍ମୀ ସବୁବେଳେ କହନ୍ତି, "କମଳା ଆମ ପାଇଁ ଯାହା କରୁଛି, କେହି ନିଜର ଲୋକ ବି ଏପରି କରିବେନି । ଆମ୍ଭେମାନେ ଚିରଦିନ ତା' ପାଖେ ଋଣୀ ରହିବୁ ।"

ବିବାହ ଦଶବର୍ଷ ହୋଇଯାଇଥିଲେ ବି କମଳା ଓ କୁବେର ନିଃସନ୍ତାନ ଥିବାରୁ ସବୁବେଳେ ବିମର୍ଷ ରହୁଥିଲେ । ଶୂନ୍ୟ କୋଳ ହୋଇ କମଳା ଦୁଃଖ ପାଉଥିଲା ବେଶୀ । ମାଆ ନ ହୋଇ ପାରିବାର ଯାତନା ଯେ କୌଣସି ନାରୀ ପକ୍ଷେ ଅସହ୍ୟ । ସେ ଅନ୍ୟ କୋଳରେ ପିଲାଟିଏ ଦେଖିଲେ ଆହତ ହୁଏ, ମନରେ ଈର୍ଷା ଆସେ ତା'ର । ଏ ପ୍ରତିକ୍ରିୟା ଖୁବ୍ ସ୍ୱାଭାବିକ ।

ମୋ ସ୍ତ୍ରୀ ଅରୁଣାଙ୍କ ପାଖେ କହୁ କହୁ କମଳା ଅନେକ ସମୟରେ କାନ୍ଦି ପକାଏ । ଅରୁଣା ତାକୁ ସାନ୍ତ୍ୱନା ଦିଅନ୍ତି, ଅନେକ କରି ବୁଝାନ୍ତି ।

ସବୁ ପ୍ରକାରର ଡ଼ାକ୍ତରୀ ଚିକିତ୍ସା ସତ୍ତ୍ୱେ କମଳା ଯେ ମାଆ ହେଉନି, ଏ ସଂପର୍କରେ କ'ଣ ଚିନ୍ତା କରାଯାଇପାରେ ?

କମଳାର କ'ଣ ମାଆ ହେବାର କ୍ଷମତା ନାହିଁ ?

ମାତ୍ର ଡ଼ାକ୍ତରମାନେ ସେପରି ତ କୌଣସି ପ୍ରତିକୂଳ ମତ ଦେଇ ନାହାନ୍ତି ।

ଦିନେ ଏକ ବିଚିତ୍ର ଘଟଣା ଘଟିଥିଲା ।

ଶ୍ୱେତଶ୍ମଶ୍ରୁଳ ମୁଖ ଗୈରିକ ବସନ ପରିହିତ ଜଣେ ସନ୍ନ୍ୟାସୀ ହଠାତ୍ ସକାଳେ ଆସି ଶ୍ରୀନିବାସନ୍‌ଙ୍କ ଘରେ ଉପସ୍ଥିତ । ସିଧା ଦ୍ୱିତଳକୁ ଉଠି ଯାଇଛନ୍ତି ।

ଭକ୍ତିମାନ ଶ୍ରୀନିବାସନ୍ ଓ ଭକ୍ତିମତୀ ତାଙ୍କର ପତ୍ନୀ ଲକ୍ଷ୍ମୀ ସ୍ୱାଗତ ଜଣାଇଥିଲେ ସ୍ୱାମିଜୀଙ୍କୁ ।

ବିଶ୍ୱାସରେ ଭରପୂର ଥିଲେ ସେମାନେ ।

ଅବିଳମ୍ବେ ଶ୍ରୀନିବାସନ୍ ତଳକୁ ଓହ୍ଲାଇ ଆସି ମୋତେ ଡ଼ାକି ନେଇଥିଲେ ଉପରକୁ ।

ଆମେ ଯିବା ବେଳକୁ ସ୍ୱାମିଜୀ ଶଯ୍ୟାଶାୟିନୀ ରୁକ୍ମିଣୀ ଦେବୀଙ୍କୁ ନିର୍ନିମେଷ ନୟନରେ ଅନାଇ ରହିଛନ୍ତି ।

ତାପରେ ସେ ବୁଲିପଡ଼ି ଶ୍ରୀନିବାସନ୍‌ଙ୍କୁ ଚାହିଁ କହିଲେ, "ଆପଣଙ୍କ ମାତା ନିଜର ପ୍ରାରବ୍ଧ ଭୋଗ କରୁଛନ୍ତି । ଭୋଗିବେ ଆଉ କିଛିଦିନ । ମୁଁ କିଛି ବିଭୂତି ଦେଉଛି, ପ୍ରତ୍ୟହ ସକାଳେ ପାଇବାକୁ ଦେବେ ତାଙ୍କୁ । ଯନ୍ତ୍ରଣାର ଯଥେଷ୍ଟ ଉପଶମ ହେବ । ଭାଗ୍ୟଫଳ ତ କେହି ଖଣ୍ଡନ କରି ପାରିବେ ନାହିଁ ।"

ସ୍ୱାମିଜୀ ରୁକ୍ମିଣୀ ଦେବୀଙ୍କର ଅସୁସ୍ଥତାର ସଂବାଦ ପାଇ କ'ଣ ଏଠାରେ ଆସି ଉପସ୍ଥିତ ହୋଇଛନ୍ତି ?

ମାତ୍ର ତାଙ୍କୁ ଖବର ଦେଲା କିଏ ?

ରୁକ୍ମିଣୀ ଦେବୀଙ୍କର ଯନ୍ତ୍ରଣାର ଉପଶମ ଲାଗି ଯେଉଁ ବ୍ୟବସ୍ଥା କଲେ ତା' ମଧ୍ୟ ଅଲୌକିକ ।

ସମସ୍ତ ବ୍ୟାପାର, ଇନ୍ଦ୍ରଜାଲ ପରି ମନେ ହେଉଥିଲା । ସମସ୍ତଙ୍କର ଅନୁରୋଧ ସତ୍ତ୍ୱେ ସ୍ୱାମିଜୀ ଆଉ ମୁହୂର୍ତ୍ତେ ବି ରହିବାକୁ ସମ୍ମତ ହେଲେନି ।

ଫେରିପଡ଼ି ଘରୁ ବାହାରି ଆସି ପାହାଚରେ ଓହ୍ଲାଇ ଯିବାକୁ ଉଦ୍ୟତ ହେଉଛନ୍ତି, କେଉଁଠି ଥିଲା କେଜାଣି କମଳା ହଠାତ୍ ଧାଇଁ ଆସି ତାଙ୍କ ପାଦତଳେ ଲମ୍ବ ହୋଇ ପଡ଼ିଗଲା ।

"କିଏ ମା ତୁମେ ? କ'ଣ କହୁଛ ?" ସ୍ୱାମିଜୀଙ୍କ କଣ୍ଠରେ ମଧୁର ପ୍ରଶ୍ନ ।

କଇଁ କଇଁ ହୋଇ କାନ୍ଦୁଛି କମଳା । ତା'ର ଅଶ୍ରୁଳ କଣ୍ଠରେ ବ୍ୟାକୁଳ ଅନୁରୋଧ । କୃପାଭିକ୍ଷା କରୁଛି ସେ ।

ଉଠ ମା, ମୋ ପାଦ ଛାଡ଼" ନଇଁପଡ଼ି କମଳାକୁ ପାଦ ପାଖରୁ ଉଠାଇ ଆଣିଲେ ସ୍ୱାମିଜୀ । ଭାବ ଗଦ୍‌ଗଦ୍ କଣ୍ଠରେ ତାକୁ କହିଲେ, "ତମେ ମାତୃତ୍ୱ ଲାଭ କରିବ ନିଷ୍ଚୟ । ମାତ୍ର ସେ ସୁସମୟ ଏବେ ଆସିନି, ବିଳମ୍ବ ଅଛି ।"

"ମାତ୍ର କମଳାର ସେ ସୌଭାଗ୍ୟ ଲାଭର ସମୟ କେବେ ?" ଉପସ୍ଥିତ ସମସ୍ତଙ୍କ ଦୃଷ୍ଟିରେ ଅନୁଚ୍ଚାରିତ ସେଇ ପ୍ରଶ୍ନ ।

ସେଇ ପ୍ରଶ୍ନ ଉଦ୍‌ଗ୍ରୀବ କମଳାର ଦୃଷ୍ଟିରେ ବି ପ୍ରଚ୍ଛନ୍ନ ରହିଚି ।

ସର୍ବଜ୍ଞଙ୍କ ଭଳି ସ୍ୱାମିଜୀ ହସିଦେଇ କହିଲେ, "ତୁମମାନଙ୍କର ନୀରବ ପ୍ରଶ୍ନ ମୁଁ ବୁଝି ପାରିଛି । ତେବେ ଶୁଣ ।"

କ୍ଷଣେ ରହିଯାଇ ଶ୍ରୀନିବାସନ୍‌ଙ୍କୁ ଚାହିଁ ମୃଦୁ କଣ୍ଠରେ କହିଲେ, "ତୁମ ମାଆଙ୍କ ମୃତ୍ୟୁ ପରେ ପରେ ଯେ ଅନ୍ତଃସତ୍ତ୍ୱା ହେବ" ଅଙ୍ଗୁଳି ନିର୍ଦ୍ଦେଶ କଲେ କମଳା ପ୍ରତି, "ଏବଂ ତୁମ ମାଆଙ୍କ ଆତ୍ମା ଏହାରି ଜଠରରୁ ପୁତ୍ର ସନ୍ତାନ ରୂପେ ଜନ୍ମ ଗ୍ରହଣ କରିବ ।"

ଶୁଣି ସ୍ତବ୍ଧ ହୋଇ ଯାଇଛନ୍ତି ଉପସ୍ଥିତ ସମସ୍ତେ ! ସେମାନଙ୍କର ବିସ୍ମୟ ବିସ୍ଫାରିତ ଅପଲକ ଦୃଷ୍ଟି ସ୍ୱାମିଜୀଙ୍କ ଉପରେ ନିବଦ୍ଧ-କିଏ ଯେ ସର୍ବଜ୍ଞ ମହାତ୍ମା ?

ସ୍ୱାମିଜୀ ଆଉ ମୁହୂର୍ତ୍ତେ ମାତ୍ର ବିଳମ୍ବ ନ କରି ସୋପାନରେ ଦ୍ରୁତ ଓହ୍ଲାଇଗଲେ ତଳକୁ ।

ସ୍ୱାମିଜୀ ଆଗେ ଆଗେ ଓ ତାଙ୍କ ପଛେ ପଛେ ଶ୍ରୀନିବାସନ୍ ଓ ମୁଁ ।

"ଆପଣମାନେ ମୋତେ କାହିଁକି ଅନୁସରଣ କରୁଛନ୍ତି ।" ଚାଲୁ ଚାଲୁ ସ୍ୱାମିଜୀ ହଠାତ୍ ରହିଯାଇ ପଛକୁ ଫେରିପଡ଼ି ବିରକ୍ତିମିଶା କଣ୍ଠରେ ଉଦ୍ଦେଶ୍ୟ କରି କହିଲେ ଆମକୁ, "ମୋତେ ଯିବାକୁ ଦିଅନ୍ତୁ ।" ତା'ପରେ ଫେରିପଡ଼ି ଦ୍ରୁତ ଅଗ୍ରସର ହୋଇ ରାସ୍ତାର ବାଙ୍କ ବୁଲିଯାଇ ଅନ୍ତର୍ଦ୍ଧାନ ହୋଇଗଲେ ।

ଚଳଚିତ୍ର ଭଳି ମୁହୂର୍ତ୍ତ କେତେକ ମଧ୍ୟରେ ଯାହା କିଛି ଘଟିଗଲା, ସେ ସଂପର୍କରେ କୌଣସି ଚିନ୍ତା କରିବା ଭଳି ଶକ୍ତି ନ ଥିଲା ଆମ ଦୁହିଁଙ୍କର ।

ସ୍ୱାମୀଜୀଙ୍କୁ ବିଦାୟ ଦେଇ ଆମେ ଫେରୁଥିବା ବେଳେ ଲକ୍ଷ୍ୟ କଲି ଶ୍ରୀନିବାସନ୍ ବସ୍ତ୍ରାଞ୍ଚଳରେ ଆଖି ପୋଛୁଛନ୍ତି ।

ପରବର୍ତ୍ତୀ ସମୟରେ ସନ୍ନ୍ୟାସୀଙ୍କ ଭବିଷ୍ୟତ ବାଣୀ କିନ୍ତୁ ସତ୍ୟ ପ୍ରମାଣିତ ହୋଇ ନ ଥିଲା ।

ସ୍ୱାମୀଜୀଙ୍କ ପ୍ରଦତ୍ତ ବିଭୂତି ସେବାକରି କୌଣସୀ ଉପଶମ ହୋଇନଥିଲା ରୁକ୍ମିଣୀ ଦେବୀଙ୍କର । ଅଧିକନ୍ତୁ ଯେତେବେଳେ ସେ ଶୁଣିବାକୁ ପାଇଲେ ତାଙ୍କର ଦେହାନ୍ତ ପରେ ସେ କମଳାର ଜଠରରୁ ତା'ର ପୁତ୍ର ସନ୍ତାନ ଭାବେ ଜନ୍ମ ଗ୍ରହଣ କରିବେ, ତାଙ୍କର ଦୈହିକ ଯନ୍ତ୍ରଣା ସହ ମାନସିକ ହାତୁତାଶ ଯେପରି ବହୁ ଗୁଣରେ ବଢ଼ିଗଲା । ସେ ପାଗଳ ଭଳି ପ୍ରଳାପ କରିବାକୁ ଲାଗିଲେ, "ହେ ଭଗବାନ,ପରିଶେଷରେ କମଳାର ପୁଅ ହୋଇ ମୋତେ ଜନ୍ମିବାକୁ ପଡ଼ିବ । ଏ ଶାସ୍ତି ବି ମୋ ପାଇଁ ରଖିଥିଲା ପ୍ରଭୋ !"

କାନ୍ଦି କାନ୍ଦି ପ୍ରଳାପ କରୁଛନ୍ତି, ସେ ପ୍ରଳାପର ଯେପରି ଶେଷ ନାହିଁ ।

ଆଉ ମାତ୍ର ବର୍ଷଟିଏ ବଂଚିଥିଲେ ରୁକ୍ମିଣୀ ଦେବୀ, ମାତ୍ର ଶେଷ ନିଶ୍ୱାସ ଯିବାଯାଏ ତାଙ୍କ କଣ୍ଠରେ ସେଇ କରୁଣ ପ୍ରଳାପ ଅବ୍ୟାହତ ଥିଲା ।

ରୁକ୍ମିଣୀ ଦେବୀଙ୍କ ଦେହାନ୍ତ ପରେ କମଳାର ମାଆ ହେବାର ସୌଭାଗ୍ୟ କିନ୍ତୁ ହୋଇ ନଥିଲା । ଅଥଚ ତା'ର ଏତେ ବଡ଼ ଆଶା ଓ ଉଦ୍‌ବିଗ୍ନ ପ୍ରତୀକ୍ଷା ଧୂଳିସାତ୍ ହୋଇଯିବା ଫଳରେ କାନ୍ଦି କାନ୍ଦି ପାଗଳୀ ହୋଇ ଯାଇଥିଲା ସେ ।

କମଳା ବାୟାଣୀକୁ ଅନେକ ଦିନଯାଏ ଚାରି ନମ୍ବର ହାଟରେ ଘୁରି ବୁଲୁଥିବାର ଦେଖା ଯାଉଥିଲା ।

ତା'ପରେ ସେ କୁଆଡେ ଗଲା କେଜାଣି, ଦେଖିବାକୁ ମିଳିନି ଆଉ ।

# ସବୁ ଅନ୍ଧାର ଆଜି ରାତିରେ

ଦେବପ୍ରସାଦ ଦାଶ

ଅନ୍ଧାର କଥା କହେ ।

ଅନ୍ଧାରର ବି ଭାଷା ଥାଏ । ଠିକ୍ ଯେମିତି ଆଲୁଅର ଭାଷା, ହୃଦୟର ଭାଷା, ଆକାଶର ଭାଷା, ମେଘର ଭାଷା, ସମସ୍ତେ ନିଜ ନିଜ ଢଙ୍ଗରେ କହିଯା'ନ୍ତି ନିଜ ନିଜ କଥା । ଖାଲି ବୁଝି ପାରିଲେ ହେଲା । ଦରକାର ହେଲେ ଆଳାପ ଆଲୋଚନା ବି ଚାଲିପାରେ । ପ୍ରଶ୍ନୋତ୍ତର, ପଦ୍ୟାନ୍ତର, ସୁଖ ଦୁଃଖକୁ ବର୍ଣ୍ଣନା ବି କରାଯାଇପାରେ ।

ସହରରେ ବିଜୁଳି ମିଳୁଥିଲା ରାସନ୍‌ରେ । ଚାଉଳ, ଗହମ, ଚିନି ଓ କିରାସିନି ଭଳି । ସନ୍ଧ୍ୟାରେ ଚାଲେ ଲୁଚକାଳି ଖେଳ । ସଭ୍ୟତା ବି ପରିହାସ କରେ ପଛୁଆ ଅଞ୍ଚଳକୁ । ଧୀରେ ସୁସ୍ଥେ ଆସେ, ଇଛା ହେଲେ । ୧୯୪୭ ପରଠାରୁ କେତେବାର ଯେ ବିଭାଜିତ ହୋଇ ଆସିଛି ଭାରତବର୍ଷ, ତା'ର କିଏ ବା ହିସାବ ରଖିଛି ? ଥିଲାବାଲାଙ୍କ ପାରିବାର ଭାରତ ଓ ନଥିଲାବାଲାଙ୍କ ଦୟନୀୟ ଭାରତ ଭିତରେ ଏବେ ଯୋଜନ ଯୋଜନ ର ଦୂରତ୍ୱ ।

ସରକାରୀ କାମ ନ ଥିଲେ ଏମିତି ଏକ ଇଲାକାକୁ ସେ କେବେ ଆସିଥା'ନ୍ତା କି ନାହିଁ ସନ୍ଦେହ । ସେଠି କିଛି ନଥିଲା । ନା ରାସ୍ତାଘାଟ, ନା ଭଲ ଦୋକାନ ବଜାର, ନା ଖାଇବା ପାଇଁ ଭଲ ହୋଟେଲଟିଏ । ଏପରିକି ଯେତିକି ଗାଡ଼ି ମଟର ଚାଲୁଥିଲା, ସେଥିରୁ ସ୍ଥାନଟିକୁ ଏକ ସହର କହିବାକୁ କୁଣ୍ଠାବୋଧ କରୁଥିଲା ଅରବିନ୍ଦ । ଅଥଚ ସହରଟି ପୁଣି ଏକ ଜିଲ୍ଲା ସଦର ମହକୁମା । ଦୁଇ ଦିନର ରହଣୀ ଭିତରେ ସେ ବୁଝିପାରିଥିଲା ଯେ ଅଫିସ କାମ ସାରିବା ପରେ ସନ୍ଧ୍ୟାରେ ତାକୁ ଚୁପ୍‌ଚାପ୍ ବସି ରହିବାକୁ ପଡ଼ିବ ହୋଟେଲ ଭିତରେ । ଇତସ୍ତତଃ ବୁଲି ପାରିଥା'ନ୍ତା ସେ ଅବା ବହିଟିଏ ପଢ଼ିଥାନ୍ତା କିନ୍ତୁ ବିଜୁଳିର ନିରବଚ୍ଛିନ୍ନ ଦୀର୍ଘ ଅନ୍ତର୍ଦ୍ଧାନ ତାକୁ ସେସବୁରୁ ବାଧ୍ୟକରି ବିରତ କରୁଥିଲା । ବିଜୁଳି ଚାଲିଯିବାଟା ଯେମିତି ଥିଲା ନିର୍ଦ୍ଦିଷ୍ଟ, ଚାଲିଯିବା ପରେ ନଫେରିବାଟା ଥିଲା ଅଧିକ ପ୍ରତିଶ୍ରୁତିବଦ୍ଧ । ଅନେକ ଦିନ ପରେ ସେ ତେଣୁ ଅନ୍ଧାରକୁ ଭଲ ପାଇବାକୁ ଆରମ୍ଭ କଲା ।

ଭଲ ପାଇବାଟା ଏକ ଅଭ୍ୟାସ ନା ଅଭ୍ୟାସ ହୋଇଗଲେ ଅନ୍ତରଙ୍ଗତା ଆସିଯାଏ, ଏମିତି ଏକ ପ୍ରଶ୍ନକୁ ନେଇ ସେ କେବେ ବ୍ୟସ୍ତ ହୋଇନଥିଲା । ଅନ୍ଧାର ସହିତ ଅରବିନ୍ଦର ସେମିତି କିଛି ନିୟମିତ ସମ୍ପର୍କ ନଥିଲା । କିନ୍ତୁ ମାତ୍ର ଦୁଇଦିନ ଭିତରେ ସେ ଅଭ୍ୟସ୍ତ ହୋଇଉଠୁଥିଲା ଓ ଅନ୍ଧାର ସେମିତି କିଛି ଏକ ପବିତ୍ର ପରିବେଶ ନୁହେଁ ବୋଲି କ୍ରମଶଃ ସେ ଗ୍ରହଣ କରିନେଉଥିଲା । କିଛି ନ କରି ଚୁପ୍‌ଚାପ୍ ବସି ରହିବା ବି ତାକୁ ଭଲ ଲାଗୁଥିଲା ।

ବହି ପଢ଼ି ଭାରାକ୍ରାନ୍ତ କରିଥାନ୍ତା ନିଜକୁ ଅବା ଟେଲିଭିଜନ୍‌ରୁ ଗୁଡ଼ାଏ ଅଯଥା, ଅନାବଶ୍ୟକ କାର୍ଯ୍ୟକ୍ରମ ଦେଖିଥାନ୍ତା ରିମୋଟ୍‌ର ବଟନ ଉପରେ ହାତ ରଖି । ଛାତର କଡ଼ିବରଗା ଗଣିଥାନ୍ତା ।

ମୋବାଇଲ ଚାର୍ଜରେ ବସାଇ ବାରମ୍ବାର ସମୟ ଦେଖୁଥାନ୍ତା । ଏସବୁ ଏବେ ସେ କରୁନଥିଲା ଏବଂ କିଛି ହରାଉଥିବା ଭଳି ତା'ର ମନେ ହେଉନଥିଲା । ପ୍ରଥମେ ଅବଶ୍ୟ କିଛିଟା ଅସୁବିଧାଜନକ ମନେହୋଇଥିଲା ତାକୁ । କିନ୍ତୁ ସେ ବୁଝାମଣା କରିନେଲା ଅନ୍ଧାର ସହିତ ।

ଆଖି ସାମନାରେ କିଛି ନାହିଁ । ରୂପରେଖ, ଇତିହାସ, ଭୂଗୋଳ, ସ୍ଥିତି ଅବସ୍ଥିତି– କିଛି ହେଲେ କିଛି ନାହିଁ । ଖାଲି ଯାହା ନିଃଶ୍ୱାସର ଶବ୍ଦ । ତା' ନିଜ ନିଃଶ୍ୱାସର ସ୍ୱର । ବଞ୍ଚିବାର ଏତେ ଦୀର୍ଘକାଳ ଭିତରେ ସେ କେବେ ଅନ୍ତରଙ୍ଗ ଭାବରେ ନିଜ ନିଃଶ୍ୱାସର ଶବ୍ଦକୁ ଶୁଣିନଥିଲା । ସତରେ ଏତିକି ତ ଜୀବନ ! ଅରବିନ୍ଦ ଭାବିଲା ମଣିଷ ଯଦି ଅନ୍ଧାର ଭିତରେ ବଞ୍ଚୁଥାନ୍ତା, ତାହାହେଲେ ହୁଏତ ଈର୍ଷା, ଦ୍ୱେଷ, ଘୃଣା, ଅସହିଷ୍ଣୁତା, ଆହରଣର ଆକାଂକ୍ଷା କିଛି ନଥାନ୍ତା ! କେଡ଼େ ସୁନ୍ଦର ହୋଇନଥାନ୍ତା ଏ ପୃଥିବୀ ! ଉଦ୍‌ଭାସିତ ହୋଇଉଠୁଥିଲା ତା' ଭିତରେ ଭିତରେ ଅନେକ କିଛି ।

ବେଶ୍ କିଛି ସମୟ ହେଲା ଅନୁଭବ କରୁନଥିଲା ସେ ଆଲୋକର ସତ୍ତାକୁ । କିନ୍ତୁ ଆଲୋକିତ ଅନୁଭବଟିଏ ତାକୁ କ୍ରମଶଃ ନେଇ ଚାଲିଥିଲା ନିଜର ଗଭୀର ଆଶ୍ଳେଷ ଭିତରକୁ । ଶୂନଶାନ ନୀରବତା ଚାରିକଡେ । ହଠାତ୍ ମୋବାଇଲ ଫୋନ୍‌ର ଘଣ୍ଟି ବାଜିଲା । ନୀରବତାକୁ ଅଧିକ ବ୍ୟାହତ ହେବାକୁ ଦେବନାହିଁ ବୋଲି ଚାହିଁ ଫୋନ୍‌ଟିକୁ ଧରିଲା ଅରବିନ୍ଦ ।

: "ଭଲ ଅଛନ୍ତି ସାର୍ ? ଆଜି ଗସ୍ତ କେମିତି ରହିଲା ?"

ଅରବିନ୍ଦ ବାରିବାକୁ ଚେଷ୍ଟାକଲା । ଅଫିସ୍‌ର କେହି ହେଇ ପାରନ୍ତି । ରହି ରହି ସେ ଉତ୍ତର ଦେଲା– "ହଁ, ପ୍ରାୟତଃ ଭଲ । ଆଇ ଆମ୍ ଅନ୍ ଟାର୍ଗେଟ ।"

: "ଆଉ କିଛି ଦରକାର ସାର୍ ? ଆପଣ ସଙ୍କୋଚ କରନ୍ତୁ ନାହିଁ । ଖାଲି କୁହନ୍ତୁ ।"

: "ଆରେନା ନା, ଆଇ ଆମ୍ ଫାଇନ୍ । ନୋ ପ୍ରବ୍ଲେମ୍ ।"

: "ଆପଣଙ୍କର କିଛି ଦରକାର ନାହିଁ ? ଠିକ୍ ଅଛି ସାର୍ ।"

ଫୋନ୍‌ରଖି ଦେଇଥିଲେ ପ୍ରଶ୍ନକର୍ତ୍ତା । ଆଶ୍ଚର୍ଯ୍ୟ ହେଲା ଅରବିନ୍ଦ । ଲୋକଟି ପରିଚୟ ଦେଲାନାହିଁ । ଅବଶ୍ୟ କିଛିଟା ଚିହ୍ନା ଚିହ୍ନା ଲାଗୁଥିଲା ସ୍ୱରଟା । କିଏ ହେଇପାରେ ସେ ?

ଅଫିସ୍ କାମରେ ବିଭିନ୍ନ ସ୍ଥାନକୁ ଗସ୍ତରେ ଯିବାକୁ ପଡ଼େ ଅରବିନ୍ଦକୁ । ଚାରିପାଞ୍ଚଦିନ ମାସରେ । ପ୍ରକଳ୍ପ କାମ ସବୁ କେମିତି ଚାଲିଛି କ୍ଷେତ୍ରରେ, ତା'ର ପ୍ରତ୍ୟକ୍ଷ ତତ୍ତ୍ୱାବଧାନ ପାଇଁ । ସେମିତି ଆସିଛି ସେ ଏଠାକୁ । ଷ୍ଟେସନକୁ ଦୁଇଜଣ ଯାଇଥିଲେ ତାକୁ ସ୍ୱାଗତ କରିବା ପାଇଁ । ତାଛଡ଼ା ଦୁଇଦିନ ହେଲା ଏଠାକାର ଅଫିସ୍‌ର ଦୁଇଜଣ ତା' ସହିତ

କ୍ଷେତ୍ର ପରିଦର୍ଶନର ଗାଇଡ୍ ହିସାବରେ ଯାଉଛନ୍ତି । ସ୍ଥାନୀୟ ଭାଷା ବୁଝିପାରୁଥିଲେ ବି କହିପାରେ ନାହିଁ ସେ । ସାଙ୍ଗରେ ଯାଉଥିବା ଦୁଇଜଣ ଭାଷାନ୍ତରକାରୀର ଭୂମିକା ମଧ୍ୟ ତୁଲାଉଥା'ନ୍ତି । ଏ ଦୁହିଁଙ୍କ ମଧ୍ୟରେ ଥିଲେ ଗୁରୁଦାସ ବାବୁ । ତା'ଠାରୁ ପଦବୀରେ କନିଷ୍ଠ ହୋଇଥିଲେ ମଧ୍ୟ ଅରବିନ୍ଦ ତାଙ୍କୁ ସମ୍ମାନ ଜଣାଉଥିଲା । ଗୁରୁଦାସବାବୁଙ୍କର ଜିଲ୍ଲା ସମ୍ପର୍କରେ ରହିଥିଲା ପ୍ରଗାଢ ଜ୍ଞାନ । ସବୁଠାରୁ ବଡ଼ କଥା ହେଲା ସେ ଥିଲେ ଜଣେ କବି । ଅତି ଆଭ୍ୟନ୍ତରୀଣ ଅଞ୍ଚଳକୁ ଯିବାର ଦୀର୍ଘ ବିରକ୍ତିକର ଯାତ୍ରା ସମୟ ସାହିତ୍ୟ ଚର୍ଚ୍ଚାରେ କିଭଳି ବିତିଯାଉ ଥିଲା, ଜଣାପଡୁ ନଥିଲା ।

ଏ ଟେଲିଫୋନ୍ କଲ୍‌ଟି ତାଙ୍କର ନଥିଲା, ତେବେ କିଏ ପଚାରୁଥିଲା ତାଙ୍କ ଭଲମନ୍ଦ ଏତେ ରାତିରେ? ସେଇ ସ୍ୱରକୁ ତ ଚିହ୍ନିପାରିବ ସେ । ହୁଏତ ସମୟାନ୍ତରରେ ।

ଅନ୍ଧାର କିଛି ଅପ୍ରକାଶ୍ୟ ପ୍ରଶ୍ନମାନଙ୍କୁ ଛାଡ଼ିଦେଇ ଅଧିକ ଗଭୀର ହେଉଥିଲା । ବିଜୁଳି ଫେରିବାର ସମ୍ଭାବନା ଦିଶୁନଥିଲା । ପୂର୍ବ ରାତିରେ କିନ୍ତୁ ଫେରିଆସିଥିଲା ରାତି ଅଧକୁ । ସେତେବେଳକୁ ଶୋଇପଡ଼ିଥିଲା ଅରବିନ୍ଦ । ପଙ୍ଖା ବୁଲିବାର ଶବ୍ଦ ହିଁ ତାକୁ ବିଜୁଳିର ଉପସ୍ଥିତିକୁ ଜଣାଇ ଦେଇଥିଲା ।

ଡିନର୍ ସାରି ଦେଇଥିଲା ସେ ବାହାରକୁ ଯାଇ । ନୀରବ ଅନ୍ଧାର, ନିସ୍ତବ୍ଧ ଅନ୍ଧାର ଭିତରେ ସତେ ଯେମିତି ସେ ଏକମାତ୍ର ଜୀବନ୍ତ ଅବସ୍ଥିତି ! ତକିଆ ଉପରେ ମୁଣ୍ଡରଖି ମନେପକାଇଲା ସେ ଦିନଯାକର କଥା ।

ସେହି ଆଦିବାସୀ ମହିଳାମାନେ ଅନୁନୟ କରୁଥିଲେ ତାକୁ ଆଉ କିଛି ଋଣ ପାଇଁ । ଛେଳି ପାଳିବା ପାଇଁ ଟଙ୍କା ଦିଆଯାଇଥିଲା ସେମାନଙ୍କୁ । ଛେଳି କିଣି ବଞ୍ଚିବାର ରାହା ଖୋଜୁଥିଲେ ସେମାନେ । ହଠାତ୍ ଘୋଟି ଆସିଥିଲା ଦୁର୍ବିପାକ । କେଉଁ ଏକ ଅଜଣା ରୋଗରେ ଦିନ ଦୁଇଟା ଭିତରେ ଠକ୍‌ଠାକ୍ ମରିଯାଇଥିଲେ ଛେଳି ସବୁ ! ପୁଣି ସେମାନେ ପେଟ ପାଇଁ ମୂଲ ଲାଗିବାକୁ ବାହାରି ଯାଉଥିଲେ ଦିନ ତମାମ । ଏଣେ ଋଣ ଟଙ୍କା ଫେରାଇବାର ତାଗିଦ । ପେଟରୁ କାଟି ଶୁଝୁଥିଲେ ସେମାନେ । କାକୁତି କରୁଥିଲେ, ଆଉ କିଛି ଟଙ୍କା ମିଳିଗଲେ ପୁଣି ଯୁଝିବାର ପ୍ରୟାସ କରନ୍ତେ । କେତେ ସ୍ୱଚ୍ଛ ସେମାନଙ୍କର ବଞ୍ଚିବାର ଦାବୀ ? ଅରବିନ୍ଦର ଛାତି ଭିତରଟା ରୁନ୍ଧି ହେଇ ଯାଉଥିଲା । ନିୟମିତ କହୁଛି ଜଣକୁ ଥରେ ମାତ୍ର ମିଳିପାରିବ ସହାୟତା । ସେତିକିରେ ସେ ଘିଅମହୁରେ ଭାସିବାକୁ ବାଧ୍ୟ । ତାକୁ ଦେବଦୂତ ମନେକରି ଦୁଃଖ ସବୁକୁ କହିଦେଉଥିବା ସେହି ନୀରିହ ସ୍ତ୍ରୀଲୋକମାନଙ୍କୁ କେମିତି କହିଥା'ନ୍ତା ଯେ ସେମାନଙ୍କୁ ସେ ଆଉ କୌଣସି ସାହାଯ୍ୟ କରିପାରିବ ନାହିଁ?

ସେ ଗାଁରୁ ଫେରିବା ବେଳକୁ ସୂର୍ଯ୍ୟ ଲୁଚିସାରିଥିଲେ ନିଘଞ୍ଚ ଜଙ୍ଗଲ ଭିତରେ । ଅନ୍ଧାର ଭିତରେ ଅଙ୍କାଳି ଅଙ୍କାଳି ରାସ୍ତା ଖୋଜିଥିଲା ଗାଡ଼ିଟି । ଗୁରୁଦାସ ବାବୁ କହିଥିଲେ- "ସାର୍, ଏହି ଆଦିବାସୀ

ମହିଳାମାନେ ନବେ ପ୍ରତିଶତ ଋଣ ଟଙ୍କା ପରିଶୋଧ କରିସାରିଲେଣି ।" ଅରବିନ୍ଦ ବିସ୍ମୟାଭିଭୂତ ହୋଇଗଲା । ଏହି ମୂଳ ଲାଗୁଥିବା ସ୍ତ୍ରୀମାନେ ଘୋର ଦାରିଦ୍ର୍ୟ ଭିତରେ ବି କେତେ ଉଦାର ଓ ପ୍ରାଚୁର୍ଯ୍ୟମୟ ! ଅଥଚ ବଡ ବଡ଼ ପୁଞ୍ଜିପତିମାନଙ୍କ ପାଖରେ ଦେଶର ସତୁରୀ ହଜାର କୋଟି ଟଙ୍କା ଅନାଦାୟ ପଡ଼ିରହିଛି !!

ଡ୍ରାଇଭର୍ ମୁଖ୍ୟସଡ଼କ ଧରିବାପାଇଁ ରାସ୍ତା ପଚାରୁଥିଲା । ଅରବିନ୍ଦର ମନେହେଉଥିଲା ତା' ଭିତରେ ଭିତରେ ଆଲୋକର ଉଜ୍ଜ୍ୱଳ ରେଖାଟିଏ ଅନ୍ଧକାରକୁ ଚିରି ଉପଲବ୍‌ଧିର ମାର୍ଗ ସବୁକୁ ଉନ୍ମୋଚିତ କରି ଚାଲିଛି । ରାସ୍ତାର ଦୁଇପଟେ ଧାଡ଼ି ଧାଡ଼ି ଅନ୍ଧାର, ଅଥଚ ତା' ସମ୍ମୁଖରେ ସବୁ କିଛି ସ୍ପଷ୍ଟ, ସବୁକିଛି ଆଲୋକିତ ।

ଆଖି ଖୋଲିଲା, ପୁଣି ବୁଜିଲା, ପୁଣି ଖୋଲିଲା, ଆଜି କିଛି ପାର୍ଥକ୍ୟକୁ ବାରିପାରିଲା ନାହିଁ । ଏକା ପ୍ରକାରର ଅନୁଭୂତି । ଆଖି ମୁଦିଲେ ବି, ଖୋଲିଲେ ବି । କେବଳ ଅଦୃଶ୍ୟ ଅଦୃଶ୍ୟ ସବୁ । ଅନ୍ଧାରରେ ବା କ'ଣ ଦେଖିବାକୁ ପ୍ରୟାସ କରାଯାଇ ପାରେ ? ଖୋଲା ଆଖି ବନ୍ଦ ହୋଇଆସିଲା ଓ ଅନ୍ଧାରକୁ ସାଙ୍ଗରେ ଧରି ଶୋଇ ପଡ଼ିଲା ସେ ।

ଶୀଘ୍ର ବାହାରିଯିବ ବୋଲି ସ୍ଥିର କରିଥିଲା ସେ । ଗସ୍ତରେ ଆସିଲା ବେଳେ ଏମିତି ଏକ କାର୍ଯ୍ୟସୂଚୀକୁ ଅଭ୍ୟାସରେ ପକାଏ ଅରବିନ୍ଦ । ସମୟର ପୂର୍ଣ୍ଣ ବିନିଯୋଗ ଓ ଯଥାସମ୍ଭବ ଅନୁଭୂତି ସଂଗ୍ରହ । କ୍ଷେତ୍ର ପରିଦର୍ଶନର ଉଦ୍ଦେଶ୍ୟ ମଧ୍ୟ ସେଇଆ । ଅସଂଖ୍ୟ ସାଧାରଣ ଲୋକଙ୍କ ଜୀବନ ସହିତ ସାମିଲ ହୋଇଯାଅ । ସେମାନଙ୍କ ସୁଖଦୁଃଖ, ହସଖୁସି ବାଣ୍ଟ । ଦେଖିବ, ତମେ ତମ ସିଂହାସନରୁ ଓହ୍ଲାଇ ଆସିବ । ଏଠି ଅସାଧାରଣ ହେବା ଭାରୀ ସହଜ, ସାଧାରଣ ହେବା ହିଁ କଷ୍ଟକର ।

ଗୁରୁଦାସବାବୁ ଗାଡ଼ି ସହିତ ପ୍ରସ୍ତୁତ ଥିଲେ । ସାଙ୍ଗରେ ଥିଲା ହୀରେନ ଦତ୍ତ । ଲୋକଟିକୁ ଆସିବା ଦିନ ଷ୍ଟେସନରେ ଦେଖିବା ଭଳି ମନେହେଲା ଅରବିନ୍ଦର । ଗୁରୁଦାସବାବୁ ପରିଚୟ ଦେଲେ । ହଁ, ସେ ହିଁ ଷ୍ଟେସନରୁ ରିସିଭ୍ କରିଥିଲେ ତାକୁ, ହଠାତ୍ ଚିହ୍ନି ପାରିନଥିବାରୁ ସାମାନ୍ୟ ଲଜ୍ଜିତ ମନେକଲା ଅରବିନ୍ଦ ନିଜକୁ । ତେବେ ହୀରେନ ତ ଏକୁଟିଆ ନଥିଲେ ସେଦିନ, ଆଉ ଜଣେ ବି ସାଙ୍ଗରେ ଥିଲା । ତଥାପି ସେ ତାଙ୍କୁ ଚିହ୍ନିବା ଉଚିତ୍ ଥିଲା ।

ହୀରେନଙ୍କ ତତ୍ପରତା ବିନତମାମ ଅଭିଭୂତ କରିଥିଲା ଅରବିନ୍ଦକୁ । ହିତାଧିକାରୀମାନଙ୍କୁ ବ୍ୟକ୍ତିଗତ ଭାବରେ ଚିହ୍ନିଥିଲେ ସେ । ସେମାନଙ୍କ ପାଖରେ ପହଞ୍ଚିବାର ରାସ୍ତା ଓ ଠିକଣା ସହିତ ଅଭ୍ୟସ୍ତ । ଏମିତି କର୍ମଠ କ୍ଷେତ୍ର କର୍ମଚାରୀମାନଙ୍କୁ ଦେଖିଲେ ମନ ଆନନ୍ଦରେ ପୂରିଉଠେ ତା'ର । ଯୋଜନା ସବୁ ଯେତେ ଦୃଢ଼ତାର ସହିତ ପ୍ରସ୍ତୁତ ହୋଇଥିଲେ ହେଁ ସେଗୁଡ଼ିକୁ ଲୋକଙ୍କ ପାଖରେ ପହଞ୍ଚାନ୍ତି ଗୁରୁଦାସବାବୁ ଓ ହୀରେନଙ୍କ ଭଳି କର୍ମଚାରୀମାନେ । ଖରାବର୍ଷାକୁ ଖାତିର ନକରି, ସବୁ ସ୍ୱାଚ୍ଛନ୍ଦ୍ୟକୁ ପରିତ୍ୟାଗ କରି ଏମାନେ ହିଁ ତ ପ୍ରଗତିର

ଗଙ୍ଗାକୁ ବୋହି ଆଣନ୍ତି ତୃଣମୂଳ ପର୍ଯ୍ୟନ୍ତ । : "ପାଖରେ ପାର୍ଥପ୍ରତିମାର ଘର । ଆପଣ ଶୁଣିଥିବେ ନିଶ୍ଚୟ ।"

ଗୁରୁଦାସବାବୁଙ୍କ କଥାରେ ଅରବିନ୍ଦ ଫେରି ଆସିଲା ନିଜ ପାଖକୁ ।

: "ମାନେ ? ଯାହାକୁ ଏକ ନାବାଳିକା ଝିଅର ଧର୍ଷଣ ଓ ହତ୍ୟା ଅପରାଧରେ ଗତବର୍ଷ ଫାଶୀ ଦିଆଯାଇଥିଲା ?" ଅରବିନ୍ଦ ପଚାରିଲା ।

ଗୁରୁଦାସବାବୁ ସ୍ଥାନୀୟ ବ୍ୟକ୍ତି । ସେ ଅଞ୍ଚଳରେ ତାଙ୍କ ପରିବାରର ନାଁ ଡାକ ଅଛି । ପାର୍ଥପ୍ରତିମ ଚାଟାର୍ଜୀ ମଧ୍ୟ ସେହି ଅଞ୍ଚଳର, ତାଙ୍କ ଗାଁ ପାଖରେ । ଦୀର୍ଘ ଚଉଦବର୍ଷ ଜେଲ୍‌ରେ ରହିବା ପରେ ତାକୁ ଫାଶୀ ଦିଆଯାଇଥିଲା ବର୍ଷକ ତଳେ । ସ୍ଥାନୀୟ ଲୋକେ କିନ୍ତୁ ପାର୍ଥପ୍ରତିମକୁ ନିର୍ଦ୍ଦୋଷ ମନେକରୁଥିଲେ । ତାକୁ କ୍ଷମା କରିଦେବା ପାଇଁ ସେମାନେ ଆନ୍ଦୋଳନ ମଧ୍ୟ ଚଳାଇଥିଲେ । କିନ୍ତୁ ନିଷ୍ଫଳ ହୋଇଥିଲା ସେସବୁ ଷୋହଳ ବର୍ଷର ଏକ ଝିଅକୁ ବୀଭତ୍ସ ଭାବରେ ଧର୍ଷଣ ଓ ହତ୍ୟା ଅପରାଧ ପାଇଁ ମୃତ୍ୟୁଦଣ୍ଡ ପାଇଥିଲା ସେ । ଗଣମାଧ୍ୟମରେ ବେଶ୍ ପ୍ରଚାରିତ ହୋଇଥିଲା ଘଟଣାଟି ।

ଅରବିନ୍ଦ କୌତୂହଳୀ ହୋଇପଡ଼ିଲା ।

ଗୁରୁଦାସବାବୁ କହିଚାଲିଲେ । ପାର୍ଥପ୍ରତିମର ପରିବାର ଦିନେ ଥିଲା ଖୁବ୍ ସମ୍ପନ୍ନ । କ୍ରମଶଃ ସବୁ ହରାଇ ବସିଥିଲେ ସେମାନେ । ଯାହା କିଛିଥିଲା ପାର୍ଥପ୍ରତିମକୁ ବଞ୍ଚାଇବାର ପ୍ରୟାସରେ ସେସବୁ ବି ନିଃଶେଷ ହୋଇଗଲା ଧୀରେ ଧୀରେ । ଚଉଦବର୍ଷର ଆଇନଗତ ଲଢ଼େଇ କିଛି କମ୍ ନୁହେଁ । ତା'ର ମୃତ୍ୟୁ ପରେ ବୃଦ୍ଧା ମା' ଅସୁସ୍ଥ ଓ ଶଯ୍ୟାଶାୟୀ । ପିତା ସ୍ଥାନୀୟ କାଳୀ ମନ୍ଦିରରେ ପୂଜା କରି ଯତ୍‌କିଞ୍ଚିତ୍ ଆୟ କରି ଘରଚଳାନ୍ତି । ସାନ ଭାଇଟି ବେକାର ।

: "ଆଉ ପାର୍ଥପ୍ରତିମର ସ୍ତ୍ରୀ ? ବିଚାରୀ ତ ଜୀବନ କ'ଣ ଜାଣିବା ପୂର୍ବରୁ ସବୁ କିଛିକୁ ହରାଇ ବସିଥିଲା !" ଅରବିନ୍ଦ ପଚାରିଲା ।

: "ହଁ, ବିବାହର ମାତ୍ର ମାସକ ପରେ ପାର୍ଥପ୍ରତିମ ଧର୍ଷଣ ଅପରାଧରେ ଗିରଫ ହୋଇଥିଲା । ଦୀର୍ଘ ଚଉଦ ବର୍ଷକାଳ ସେ ମଧ୍ୟ ଏହି ପରିବାର ସହିତ ସବୁ ଦୁଃଖକଷ୍ଟରେ ସାମିଲ ଥିଲା । କିନ୍ତୁ ଶେଷ କେତେବର୍ଷ କିଛିଟା ପରିବର୍ତ୍ତନ ଆସିଥିଲା ତା' ଭିତରେ । ସେ ଅନ୍ୟମନସ୍କ ରହୁଥିଲା । ପାର୍ଥପ୍ରତିମର ମୃତ୍ୟୁପରେ ସ୍ଥାନୀୟ ଲୋକେ ତାକୁ ଅଙ୍ଗନବାଡ଼ିରେ ଚାକିରି କରାଇ ଦେଇଥିଲେ ଏବଂ ଏବେ ସେ ସେହି ପରିବାରଠାରୁ ଦୂରରେ ଅନ୍ୟ ସ୍ଥାନରେ ରହୁଛି ।" ଗୁରୁଦାସଙ୍କ କଥାରୁ ଜଣାପଡୁଥିଲା ଯେ ପାର୍ଥପ୍ରତିମର ସ୍ତ୍ରୀର ତା' ପରିବାର ସହିତ ଆଉ କୌଣସି ସମ୍ପର୍କ ନାହିଁ ଏବେ । କାମ ଛଡ଼ା ଅନ୍ୟ କଥାରେ ପ୍ରାୟତଃ ଭାଗ ନେଉ ନଥିବା ହୀରେନ ଏତିକି ବେଳେ କହିଥିଲେ- "ସ୍ତ୍ରୀମାନଙ୍କ ଚରିତ୍ରକୁ ତର୍ଜମା କରିବା ଏତେ ସହଜ ନୁହେଁ । ସେମାନେ ତ ସବୁବେଳେ ଅବୁଝା ।" ଅରବିନ୍ଦ ହସି ଦେଇଥିଲା । ଜୀବନ ଏଭଳି ସାଧାରଣ ପ୍ରତିପାଦନ ଉପରେ ନିର୍ଭର କରେନାହିଁ । ପରିପୂର୍ଣ୍ଣ ଜୀବନଟିଏ ଜୀଇଁଲା ପରେ ବି ତ

ଜୀବନକୁ ବୁଝିହୁଏ ନାହିଁ । ଜୀବନ ତ ସବୁବେଳେ ଆଲୁଅ ଅନ୍ଧାରର ଖେଳ । ଏଠି ଯାହାସବୁ ଓ ଯାହାକିଛି ଦୃଶ୍ୟ ହୁଏ, ସମୟାନ୍ତରରେ ତାହା ଅଦୃଶ୍ୟ ଓ ଯାହା ଅଦୃଶ୍ୟ, ତାହା ପୁଣି ଦୃଶ୍ୟ ହୋଇଯାଏ । ହୀରେନ ହୁଏତ ଏକ ଲଘୁ ମନ୍ତବ୍ୟ ଦେଇଛନ୍ତି ।

ସେମାନେ ଫେରୁଥିଲେ ଯାତ୍ରା ଶେଷ କରି । ଅନ୍ଧାର ସେମାନଙ୍କ ସତ୍ତାକୁ ଗ୍ରାସ କରି ଚାଲିଥିଲା । ସେମାନେ ଚାଲୁଥିଲେ ଅନ୍ଧାରରୁ ଅନ୍ଧାର ଭିତରକୁ । ବାହାରେ ଅସମାହିତ ଅନ୍ଧାର, ସେମାନଙ୍କ ଭିତରେ ବି ଏବେ ଜମାଟ ଅନ୍ଧକାର । ଏକ ବନ୍ଦ ବନ୍ଦ ନିବୁଜ ଅନୁଭବ ।

ଗୁରୁଦାସବାବୁ ବାଟରେ ଓହ୍ଲାଇ ଯାଇଥିଲେ । ହୀରେନ ଅରବିନ୍ଦକୁ ହୋଟେଲରେ ଛାଡ଼ିଥିଲେ । ପରଦିନ ଗସ୍ତ ଶେଷକରି ଫେରିବାର ଥିଲା ଅରବିନ୍ଦର । ତେଣୁ ହୀରେନଙ୍କୁ ସେ କେତେକ ଗୁରୁତ୍ୱପୂର୍ଣ୍ଣ କାଗଜପତ୍ର ପ୍ରସ୍ତୁତ ରଖିବାକୁ ନିର୍ଦ୍ଦେଶ ଦେଲା । ହୀରେନ ଅଫିସକୁ ଯାଇ ଘରକୁ ଫେରିବେ ବୋଲି ସୂଚନା ଦେଲେ । ଏତେ ରାତିରେ ହୀରେନ ପୁଣି ଅଫିସ ଯିବା କଥା ଶୁଣି ଅରବିନ୍ଦ ନିଜକୁ ଦୋଷୀ ମଣିଲା । ହୁଏତ ସେ ଅଧସ୍ତନ କର୍ମଚାରୀଙ୍କ ଉପରେ ଅଧିକ ଚାପ ପକାଉଛି ବୋଲି ତା'ର ମନେହେଲା ।

ନିଜ ରୁମ୍‌କୁ ଯାଇ ସେ ଗାଧୋଇଲା ଓ ଫେରିଆସି ପ୍ରତୀକ୍ଷା କଲା ଆଲୋକର । ପ୍ରତି ସନ୍ଧ୍ୟାପରି ବିଜୁଳି ସେଦିନ ମଧ୍ୟ ଥିଲା ଅଦୃଶ୍ୟ । ଅନ୍ଧାର ତାକୁ ବେଢ଼ି ରହିଥିଲା ଓ ସେ ଅନ୍ତର୍ଗ ମଣିଷ ଭଳି ଅନ୍ଧାରକୁ ଭଲପାଉଥିଲା । ହାତ ମୁଠାରେ ଅନ୍ଧାରକୁ ଧରୁଥିଲା ଓ ବିଭୂତି ଭଳି ଦେହରେ ଲେପୁଥିଲା । ତା'ର ଚତୁର୍ଦ୍ଦିଗରେ ବେଢ଼ି ରହିଥିଲା ସୀମାହୀନ ଅନ୍ଧକାର ଓ ସେହି ଅନ୍ଧାର ଭିତରେ ସେ ଅନୁଭବ କରୁଥିଲା ଏକ ଅନିର୍ବଚନୀୟ ପ୍ରଶାନ୍ତି ।

ଏତିକି ବେଳେ ପୁଣି ଫୋନ୍ ବାଜିଲା ପୂର୍ବରାତି ଭଳି । ଫୋନ୍ ଉଠାଇ ସାମାନ୍ୟ ବିଳମ୍ବରେ 'ହ୍ୟାଲୋ' କହିଲା ଅରବିନ୍ଦ ।

"ଆପଣ ସେବାର ମଉକା ଦେଉନାହାଁନ୍ତି ସାର୍ । ଦିନକ ଯାକର ପରିଶ୍ରମ ପରେ ସାମାନ୍ୟ ଫୁର୍ତ୍ତି ଚାହାଁନ୍ତି ନାହିଁ ଆପଣ ?" ସେହି ପରିଚିତ ସ୍ୱର, ଅନେକଟା ଚିହ୍ନା ଚିହ୍ନା, ଅଥଚ ଚିହ୍ନି ପାରୁନାହିଁ ସେ ।

ସାମାନ୍ୟ ଦୋଦୋପାଞ୍ଚ ହୋଇ ଅରବିନ୍ଦ କହିଲା- "ଆରେ ନା ନା, ମୁଁ ତ ବେଶ୍ ଅଛି, ଠିକ୍ ଅଛି । ଯାହା ବା କ୍ଲାନ୍ତି ଅନୁଭବ କରିଥା'ନ୍ତି, ବିଜୁଳି ନଥିବା ଯୋଗୁଁ ବରଂ ମୁଁ ବିଶ୍ରାମ ହିଁ କରୁଛି ।"

ଲୋକଟି ପୁଣି ଅନୁନୟ ହେଲା ପରି କହିଲା- "ଆପଣ ବନ୍ଦ କରି ଦେଉଛନ୍ତି ନିଜକୁ । ଉନ୍ମୁକ୍ତ ହେଇଯା'ନ୍ତୁ ଦେଖିବେ ହାଲ୍‌କା ଲାଗିବ । ପକ୍ଷୀଭଳି ଆପଣଙ୍କର ଡ଼େଣା ଲାଗିଯିବ ଓ ଆପଣ ପବନରେ ପହଁରିବେ । ଆନନ୍ଦ-ବିଷାଦ ସବୁ ମାନସିକ ଅବସ୍ଥା ସାର୍ । ଖାଲି ଇସାରା କରନ୍ତୁ, ମୁଁ ସାଜ ସରଞ୍ଜାମ ନେଇ ହାଜର ହେଇଯିବି ।"

ଅର୍ଥାତ୍ ? ଲୋକଟି କ'ଣ କହିବାକୁ

ଚାହୁଁଛି ? ତା'ର ଏମିତି ରହସ୍ୟମୟ କଥାର ଅର୍ଥ କ'ଣ ?

"ଆପଣ ବୋଧହୁଏ ଭାରାକ୍ରାନ୍ତ ହୋଇଗଲେ । ଆପଣଙ୍କ ଭଳି ଲୋକମାନେ ହେଲେ ବ୍ୟସ୍ତ ମଣିଷ । ନିଜ କଥା ବୁଝିବାକୁ ସମୟ ବା କାହିଁ ? ଅନ୍ଧାର ଆପଣଙ୍କୁ ଅଧିକ କ୍ଲାନ୍ତି ନ ଦେଉଥାଉ ପାରେ, କିନ୍ତୁ କ୍ଲାନ୍ତି ଅପନୋଦନ କରିବ କିପରି ? ଆପଣଙ୍କୁ ନିଜଠାରୁ ଦୂରେଇବ କିପରି ? ମଣିଷର ମନ ଓ ଶରୀର ଗୁଡ଼ି ପରି । ଆପଣ ସୂତା ଛାଡନ୍ତୁ, ଢ଼ିଲା ଦିଅନ୍ତୁ; ବାସ୍, ଗୁଡ଼ି ଆକାଶ ଛୁଇଁବ, ପବନରେ ଘୂରି ବୁଲିବ ।" ଅରବିନ୍ଦ ଏଭଳି ଅଦ୍‌ଭୁତ କଥା ସବୁ ଶୁଣି ବାସ୍ତବରେ ବିବ୍ରତ ହୋଇପଡ଼ିଲା । ଅଚିହ୍ନା ସ୍ଥାନରେ ଏଭଳି ବିଚିତ୍ର ସତ୍ୟ । ଲୋକଟିର କ'ଣ କିଛି କାମ ଅଛି ତା' ପାଖରେ ?

ଲୋକଟି ବୋଧହୁଏ ତା'ର ବ୍ୟସ୍ତତା ଓ ଅପେକ୍ଷାକୃତ ନୀରବତାକୁ ବାରିପାରିଲା । କହିଲା- "ଆପଣ ସନ୍ଦେହରେ ପଡ଼ିଗଲେ ବୋଧହୁଏ, ଭୟ କରନ୍ତୁ ନାହିଁ । ମୁଁ ଆପଣଙ୍କର ଶୁଭାକାଂକ୍ଷୀ ଓ ଆପଣଙ୍କ ଭଲ ମନ୍ଦ ବୁଝିବା ମୋର କର୍ତ୍ତବ୍ୟ, ତଥାପି ଅସମୟରେ ଆପଣଙ୍କ ବିନା ଅନୁମତିରେ ଆପଣଙ୍କ ପାଖରେ ପହଞ୍ଚିବାଟା ଭଦ୍ରତା ହେବନାହିଁ ବୋଲି ଫୋନ୍ କରୁଛି ।"

କ'ଣ ସେ କହିବାକୁ ଚାହେଁ ସ୍ପଷ୍ଟ କରୁନାହିଁ କାହିଁକି ? ତା ଛଡ଼ା ଲୋକଟି ଏତେ ସୌହାର୍ଦ୍ଦ୍ୟ ଦେଖାଉଥିବା ବେଳେ ସେ ତ ତାକୁ ଚିହ୍ନି ବି ପାରୁନି । ଯାହା କହିବା କଥା ସେ ବରଂ ସିଧା କହୁ ।

"ଦେଖନ୍ତୁ, ମଣିଷ ହାଲ୍‌କା ହେଇପାରେ କେବଳ ଦୁଇଟି ବାଟରେ ମାନସିକ ଓ ଶାରୀରିକ । ନିଜକୁ ଭୁଲନ୍ତୁ, ଆଉ କିଛି ବି ଆପଣଙ୍କୁ ବିବ୍ରତ କରିବ ନାହିଁ । ବ୍ୟବସ୍ଥିତ ରହିଲେ ମୁକ୍ତି ନାହିଁ । ଅବ୍ୟବସ୍ଥିତ ହୁଅନ୍ତୁ ମୁହୂର୍ତ୍ତକ ପାଇଁ, କିଛି ଖାଆନ୍ତୁ, କିଛି ପିଲାନ୍ତୁ । ଦେଖିବେ, ଆପଣ ନିଜ ସହିତ ନାହାଁନ୍ତି ଇଥରକୁ ଶୁଣି ପାରୁଛନ୍ତି । ଆପଣଙ୍କ ଆଖପାଖ, ପରିବେଷ୍ଟ, ପରିସର ସବୁକିଛିକୁ ଏଡ଼ାଇ ଯିବେ କିଛି ସମୟ ପାଇଁ । ମୋହମୁକ୍ତିର ଅନୁଭବ ।

ଆଉ ଶାରୀରିକ ହାଲ୍‌କା ପଣ ପାଇଁ ସେହି ପୁରୁଣା ମାଧ୍ୟମ । ଉତପ୍ତ ଶରୀରର ସାନ୍ନିଧ୍ୟ ଓ ଉତ୍ତେଜନା ହ୍ରାସ । ଯୌନତୃପ୍ତି ସଂସାରର ସବୁଠାରୁ ବଡ଼ ଯୋଗଦାନ । ଖାଲି ହାତରୁ ସୂତା ଛାଡ଼ନ୍ତୁ ଓ ଗୁଡ଼ିକୁ ଅବାଧ ଉଡ଼ିବାକୁ ଦିଅନ୍ତୁ ।" ଓଃ, ଲୋକଟି ତାହାହେଲେ ଏକ ପିମ୍ପ୍, ବ୍ଲୁଡ଼ି ଦଲାଲ । ତାକୁ ସାହେବ ଭାବି ଆପ୍ୟାୟିତ କରିବାକୁ ଚାହୁଁଛି ! ତେବେ କଥାକହିବାର ଏକ ମନ ମୁଗ୍ଧକର ଶୈଳୀ ଜଣାଅଛି ତାକୁ । ତଥାପି ସେ ପରିଚିତ ଲାଗୁଛି କାହିଁକି ?

ଲୋକଟି ଅପେକ୍ଷାକୃତ ଭାବରେ ସ୍ପଷ୍ଟ ହୋଇଗଲା ପରେ ଆଉ ତା' ସହିତ ଅଧିକ କ'ଣ କଥାବାର୍ତ୍ତା କରାଯାଇ ପାରିଥାନ୍ତା ? ଫୋନ୍ କାଟିଦେଇ ସ୍ୱିଚ୍ ଅଫ୍ କରିଦେଲା ସେ ।

ଆଖି ଝଲ୍‌ସି ଉଠିଲା ହଠାତ୍ ତା'ର । ଜଳକା ହୋଇଗଲା ପରି ଲାଗିଲା ତାକୁ ।

ବେଶ୍ କିଛି ସମୟ ଆଖି ବନ୍ଦ କରିବା ପରେ ଆଖି ଖୋଲିଲା ଅରବିନ୍ଦ । ନ ଫେରିବାର ସବୁ ଅନିର୍ଦ୍ଦିଷ୍ଟତା ଭିତରେ ବିଜୁଳି ଆସିଥିଲା । ଚତୁର୍ଦ୍ଦିଗରେ ଆଲୋକର ପ୍ରକାଶ । ସେ ଶୋଇବାର ଚେଷ୍ଟାକଲା ଓ ଶେଷରେ ଶୋଇପଡ଼ିଲା ।

ସକାଳୁ ଫେରିବାର ପ୍ରସ୍ତୁତିରେ ଲାଗିପଡ଼ିଲା ସେ । ବିଶେଷ କିଛି କାମ ନଥିଲା । ତେଣୁ ଆଖପାଖରେ ଦର୍ଶନୀୟ ସ୍ଥାନ ବୁଲି ଦେଖିଲେ ଅସୁବିଧା ନାହିଁ । ତା' ଟ୍ରେନ୍ ସନ୍ଧ୍ୟାରେ । ପ୍ରତିଦିନ ଭଳି ଗୁରୁଦାସବାବୁ ଓ ହୀରେନବାବୁ ଠିକ୍ ସମୟରେ ପହଞ୍ଚିଲେ । ବାଟରେ ଗୁରୁଦାସବାବୁ ତାଙ୍କ ରଚିତ କବିତାର ପଂକ୍ତି କେତୋଟି ଶୁଣାଇଲେ । ସରକାରୀ କାମ ଶେଷ ହୋଇସାରିଥିଲା, ତେଣୁ ସମସ୍ତେ ଥିଲେ କେତେକାଂଶରେ ସହଜ ଓ ଅନୌପଚାରିକ । କବିତା ଆଲୋଚନା ଭିତରେ ଗୁରୁଦାସବାବୁ ସୂଚନା ଦେଲେ ଯେ ସେ ଶ୍ରୀ ଚୈତନ୍ୟଙ୍କ ପତ୍ନୀ ବିଷ୍ଣୁପ୍ରିୟାଙ୍କ ଉପରେ କିଛି ଲେଖୁଛନ୍ତି । ନିତାଇ, ଗୌରାଙ୍ଗ, ଶ୍ରୀଚୈତନ୍ୟଙ୍କ ବିଶାଳ ପରିଚୟ ପଛରେ ବିଷ୍ଣୁପ୍ରିୟା ବିସ୍ମୃତ । ଇତିହାସ ତାଙ୍କ ତ୍ୟାଗକୁ ଭୁଲିଗଲା ଅତି ସହଜରେ ।

ଏମିତି ତ ହୁଏ, ଏମିତି ତ ହୋଇ ଆସିଛି । ଗୌତମ, ତଥାଗତ ବୁଦ୍ଧରେ ରୂପାନ୍ତରିତ ହେବାର କାହାଣୀ ତ ଆଜି ମଧ ଚେତନାର ଉପଲବ୍ଧିକୁ ବର୍ଣ୍ଣନା କରେ । ଅଥଚ ଯଶୋଧାରା ଓ ରାହୁଲଙ୍କ ବ୍ୟାକୁଳ ଅବସ୍ଥିତିକୁ କେହି ମନେପକାନ୍ତି କି ? ମହାତ୍ମା ଗାନ୍ଧିଙ୍କ ପତ୍ନୀ କସ୍ତୁରବାଙ୍କ ସମ୍ପର୍କରେ କିଛି ତ ଉଲ୍ଲେଖ ମିଳେ କିନ୍ତୁ ତାଙ୍କ ସନ୍ତାନମାନଙ୍କ ସମ୍ପର୍କରେ କିଏ ବା କ'ଣ ଜାଣେ ? ଅରବିନ୍ଦ ଯୁକ୍ତି ଦର୍ଶାଇଲା ।

ଏପର୍ଯ୍ୟନ୍ତ ନୀରବ ଥିବା ହୀରେନ କହିଥିଲେ- "ଏମାନେ ଯଦି ପରିବାରକୁ ଧରି ବସିଥାନ୍ତେ ହୁଏତ ଲକ୍ଷ୍ୟପଥରୁ ବିଚ୍ୟୁତ ହୋଇଥାନ୍ତେ । ପୁଣି କେତେବେଳେ ଦସ୍ୟୁ ରତ୍ନାକର ଭଳି ଏକାକୀ ସବୁ ପାପ ଓ ମୋହର ଭାରକୁ ବୋହିଥା'ନ୍ତେ । ସୁଖ, ଦୁଃଖ, ସ୍ୱାଚ୍ଛନ୍ଦ୍ୟ, ଆନନ୍ଦ ଓ ସମ୍ଭୋଗକୁ ଛାଡ଼ି ବାସ୍ତବ ତ୍ୟାଗ ତ ଏମାନେ କରିଥିଲେ । ଜଗତ କଲ୍ୟାଣ ପାଖରେ ବ୍ୟକ୍ତିଗତ ଇଚ୍ଛା ଓ ଆକାଂକ୍ଷା ଅର୍ଥହୀନ ହୋଇଯାଆନ୍ତି ନାହିଁ କି ?"

ଅନ୍ଧାର ଆଉ ଆଲୋକର ଯୁଦ୍ଧ ଭିତରେ କେତେବେଳେ ଅନ୍ଧାର ଜିତେ ତ ଆଉ କେତେବେଳେ ଆଲୋକ । ସବୁ ଅନ୍ଧାର ଆଲୋକର ନିର୍ବାପନ ନୁହେଁ ବା ସବୁ ଆଲୋକ ଅନ୍ଧାରର ଅପସାରଣ ନୁହେଁ । ଜୀବନ ତେଣୁ ନିରବଚ୍ଛିନ୍ନ ଛାଇ ଆଲୁଅରେ ଲୁଚକାଳି ଖେଳ ।

ହୀରେନ ବାସ୍ତବରେ ଗତରାତିରେ ଅଫିସକୁ ଯାଇ ଖୁବ୍ ଡେରି ପର୍ଯ୍ୟନ୍ତ ସବୁ କାଗଜପତ୍ର ପସ୍ତୁତ କରିଦେଇଥିଲେ । ବୁଲାବୁଲି ଶେଷ ପରେ କାଗଜପତ୍ର ତକ ଧରି ଅରବିନ୍ଦ ଶୀଘ୍ର ହୋଟେଲକୁ ଫେରି ଆସିଲା । ବିଦାୟ ନେଲାବେଳକୁ ଗୁରୁଦାସବାବୁ ବ୍ୟକ୍ତିଗତ କାର୍ଯ୍ୟ ହେତୁ ଷ୍ଟେସନକୁ ଯାଇପାରିବେ ନାହିଁ ବୋଲି କ୍ଷମା

ମାଗିନେଇ ଥିଲେ । କିନ୍ତୁ ହୀରେନ ସାଙ୍ଗରେ ଯିବେ ବୋଲି ସୂଚନା ଦେଇଥିଲେ ।

ଠିକ୍ ସମୟରେ ହୀରେନ ପହଞ୍ଚିଥିଲେ ଅରବିନ୍ଦକୁ ନେଇ ଯିବାକୁ । ହୋଟେଲରେ ବିଲ୍ ପେମେଣ୍ଟ କରି ଷ୍ଟେସନରେ ପହଞ୍ଚିଲା ବେଳକୁ ଜଣାପଡିଲା ଯେ ଟ୍ରେନ୍ ପହଞ୍ଚିବାକୁ ଦୁଇଘଣ୍ଟା ଡେରି ଅଛି । ହୀରେନ କହିଲେ, ସେମାନଙ୍କର ବାହାରିବା ପୂର୍ବରୁ ଟ୍ରେନ୍ ଲେଟ୍ ଅଛି କି ନାହିଁ ବୁଝିଦେଇ ଆସିବାର ଥିଲା । କିନ୍ତୁ ଏମିତି ସବୁ ବିଳମ୍ବ ସହିତ ଅରବିନ୍ଦ ଏତେ ଅଭ୍ୟସ୍ତ ଥିଲା ଯେ ଆଦୌ ବ୍ୟସ୍ତ ହେଲା ନାହିଁ ସେ ।

ରେଳଷ୍ଟେସନ ଏକ ବିଚିତ୍ର ସ୍ଥାନ । ମୁହୂର୍ତ୍ତକ ପାଇଁ ସମସ୍ତେ ଏକାଠି, ତା'ପରେ କିଏ କୁଆଡ଼େ । ଠିକ୍ ଜୀବନ ଭଳି । କିଛି ମିଳନ, କିଛି ବିଚ୍ଛେଦ । କେତେବେଳେ ପାଖକୁ ଆସିବା, ପୁଣି କେତେବେଳେ ଦୂରେଇଯିବା । କିଛି କୋଳାହଳ, ତା'ପରେ ଶୂନଶାନ ନୀରବତା । ରେଳଗାଡ଼ି ଆସେ । କିଛି ଲୋକ ଚଢ଼ନ୍ତି, କିଛି ଓହ୍ଲାନ୍ତି । ସିଟି ମାରି ମାରି ଗାଡ଼ି ଚାଲିଯାଏ । ସତେ ଯେମିତି କହିଦେଇ ଯାଏ ଯେ ଝଡ଼ଝଞ୍ଜା ଭିତରେ ନିରନ୍ତର ଆଗକୁ ବଢ଼ିବା ହିଁ ଜୀବନ ।

ଏବେ ପ୍ଲାଟଫର୍ମରେ ପ୍ରତୀକ୍ଷା, ତା'ର ସିନା ଯାତ୍ରା କରିବାର ଅଛି । ହୀରେନ ଅଯଥାରେ କାହିଁକି ଅପେକ୍ଷା କରିବେ ଏତେ ସମୟ ? ଏଭଳି ଆନୁଗତ୍ୟକୁ ସେ କେବେ ପସନ୍ଦ କରେନାହିଁ । ସମସ୍ତଙ୍କର ବ୍ୟକ୍ତିଗତ ଜୀବନ ଅଛି । ଘର, ପରିବାର ଅଛି । ଅଧସ୍ତନ ହେଲେ ବୋଲି କ'ଣ ସେମାନେ ସବୁ ଛାଡ଼ିଛୁଡ଼ି ଦେଇ ତା' ପଛେ ପଛେ ହୁକୁମ ତାମିଲ କରିବା ପାଇଁ ଘୁରି ବୁଲୁଥିବେ ? ଏସବୁର ଅପେକ୍ଷା ଯେଉଁମାନେ ରଖିଥା'ନ୍ତି, ସେମାନେ ଅମଣିଷ । ଏକ ନିରର୍ଥକ ଅହଂର ପ୍ରତିରୂପ ।

ହୀରେନ ମନକଲେ । ଟ୍ରେନ୍ ଆସିବାର ବିଳମ୍ବର ସଦୁପଯୋଗ କରାଯାଇପାରେ । ସବୁବେଳେ କ'ଣ ଅରବିନ୍ଦ ସେଠାକୁ ଆସୁଛି ? ହୀରେନ ଏକରକମ ବାଧ କରି ତାକୁ ଟାଣିନେଇଗଲେ ଷ୍ଟେସନ ବାହାରେ ଥିବା ଏକ ଜଳଖିଆ ଦୋକାନକୁ । ସହରରେ ଆଜି ଆଲୋକର ପ୍ରାଚୁର୍ଯ୍ୟ । ସତେ ଯେମିତି ତା ଫେରିବା ସମୟକୁ ସେମାନେ ଥଟ୍ଟା କରୁଥିଲେ ।

: "ଆପଣ ମୋ ପାଇଁ ଅଯଥାରେ ଅଟକି ରହିଲେ ? ଆପଣଙ୍କର ବରଂ ଘରକୁ ଫେରିବାର ଥିଲା ।" ଅରବିନ୍ଦ କହିଲା ।

ଅନାୟାସରେ ଏକ ଦୀର୍ଘଶ୍ୱାସ ବାହାରି ଆସିଲା ହୀରେନଙ୍କ ପାଖରୁ । ଖୁବ୍ ଏକ କାରୁଣରେ ଭର୍ତ୍ତି ଭର୍ତ୍ତି ଦୀର୍ଘଶ୍ୱାସ । "ଘର !... ନା ଆପଣ ବ୍ୟସ୍ତ ହୁଅନ୍ତୁ ନାହିଁ । ଆପଣଙ୍କର ତ କୌଣସି ଆବଶ୍ୟକତା ହିଁ ନାହିଁ । ଖୁବ୍ ଭଦ୍ରଲୋକ ଆପଣ । ଆମକୁ ତ ଆପଣଙ୍କ ସେବାର ମଉକା ବି ଦେଲେନାହିଁ । ବରଂ ଏ ସନ୍ଧ୍ୟାରେ ଆପଣଙ୍କ ସହିତ କିଛି ସମୟ ବିତାଇ ପାରିଲେ ମତେ ଭଲ ଲାଗିବ ।"

ହୀରେନଙ୍କ କଥା ଶୁଣିବା ପରେ ଚମକି ପଡ଼ିଲା ଅରବିନ୍ଦ । ସେ ମନେ ପକାଇବାକୁ ଚେଷ୍ଟାକଲା । ଗତ ଦୁଇ ରାତିରେ ଯେଉଁ ଅପରିଚିତ ସ୍ୱର ତାକୁ ଫୋନ୍ କରୁଥିଲା, ଇଏ ତ ସେହି ସ୍ୱର । ଅପରିଚିତ, ପୁଣି

ଚିହ୍ନା ଚିହ୍ନା । ହୀରେନ୍‌ଙ୍କୁ ସେ ଜାଣିପାରି ନ ଥିଲା କେମିତି ? ଚିହ୍ନିପାରିଲା ପରେ ସରଳ ହୀରେନ ଏବେ ଏକ ଜଟିଳ ଗଣିତ ଭଳି ମନେହେଲେ । ଅରବିନ୍ଦର ମନ ଭିତରେ ପ୍ରଶ୍ନର ପ୍ରବାହ । ସେ ଚାହିଁଲା ହୀରେନଙ୍କୁ ପ୍ରଶ୍ନବାଚୀ ଦୃଷ୍ଟିରେ ।

ହୀରେନ ସତେ ଯେପରି ପ୍ରଶ୍ନଗୁଡ଼ିକୁ ପଢ଼ି ପାରିଥିଲେ ଅରବିନ୍ଦର ଆଖିରେ । ସେ ସ୍ପଷ୍ଟ ଭାବରେ କହିଥିଲେ ଯେ ସେ ହିଁ ଥିଲେ ସେହି ଚିହ୍ନା ଚିହ୍ନା ଅଜଣା ସ୍ୱର । କିନ୍ତୁ କାହିଁକି ସେ ଫୋନ୍ କରୁଥିଲେ ? ଜଣେ ସରକାରୀ କର୍ମଚାରୀ ହେଇ ପୁଣି ଏଭଳି ଏକ ଘୃଣ୍ୟ କାର୍ଯ୍ୟ ? ? ଶେଷକୁ ସେ ଦଲାଲ ପାଲଟିଲେ ? ହୀରେନ ଆରମ୍ଭ କଲେ- "ମଣିଷ ଯାହା ଦେଖାଯାଏ, ସେ ସେମିତି ହୋଇନଥାଏ । ପରିସ୍ଥିତି ତାକୁ ଗଢ଼ିଦିଏ ।"

କିନ୍ତୁ କାହିଁକି ? କ'ଣ ପାଇଁ ? ? କି ଆବଶ୍ୟକତା ପାଇଁ ? ହୀରେନ ଅତୀତକୁ ଗଲେ ଏକ ଦୀର୍ଘ ଯାତ୍ରାପଥରେ । ଜଣେ ସାଧାରଣ ମଣିଷର ସଂସାର ଥିଲା ତାଙ୍କର । ହସଖୁସୀ, ସୁଖଦୁଃଖର ସଂସାର, ବାପା, ମା, ପ୍ରାଣପ୍ରିୟା ସ୍ତ୍ରୀ ଓ ପରେ ଏକମାତ୍ର ଝିଅକୁ ନେଇ ଛୋଟ ପରିବାର । ସମସ୍ତଙ୍କୁ ପ୍ରଚୁର ଭଲ ପାଉଥିଲେ ସେ । ପରିବାରର ପ୍ରତ୍ୟେକ ସଦସ୍ୟଙ୍କ ଭଲ ମନ୍ଦ ହିଁ ତାଙ୍କ ଜୀବନ ଥିଲା । ସେମାନଙ୍କୁ ଖୁସୀ ରଖିବା ଧ୍ୟେୟ ଥିଲା ତାଙ୍କର ।

ସବୁ ଠିକ୍‌ଠାକ୍ ଚାଲିଥିବାବେଳେ ଅଚାନକ ହେଲା ବଜ୍ରପାତ । ହୀରେନଙ୍କ ମାଆଙ୍କ ହୃଦ୍‌ଘାତ ଯୋଗୁଁ ତାଙ୍କୁ ହସପିଟାଲରେ ପହଞ୍ଚାଇ ତାଙ୍କ ପିତା ପୁଅକୁ ଫୋନ୍ କରି ଖବର ଜଣାଇବାକୁ ରାସ୍ତା ଉପରକୁ ଆସିଲେ । କେଉଁ ଏକ ବେପରୁଆ ଗାଡ଼ିଚାଳକର ଗାଡ଼ି ଧକ୍କାରେ ଶୋଚନୀୟ ଭାବରେ ରାସ୍ତାରେ ପଡ଼ି ଅତି ଅସହାୟ ମୃତ୍ୟୁ ଲଭିଲେ ସେ । ହୀରେନ ଖବର ତ ପାଇଲେ; କିନ୍ତୁ ଗୋଟିଏ ନୁହେଁ, ଦୁଇଟି ମୃତ୍ୟୁର । ସେ ପହଞ୍ଚିଲା ବେଳକୁ ମାଆ ବି ଶେଷ ନିଃଶ୍ୱାସ ତ୍ୟାଗ କରିସାରିଥିଲେ ।

ସେ ଅବଶ ଓ ସ୍ତବଧ୍ ହୋଇ ଠିଆ ହୋଇଥିବା ବେଳେ ଆଉ ଏକ ସମ୍ବାଦ ପହଞ୍ଚିଥିଲା ପାଖରେ । ପ୍ରାଣପ୍ରିୟା ପତ୍ନୀ ତାଙ୍କର ଏକମାତ୍ର ଝିଅକୁ ଘରେ ଛାଡ଼ି ଫେରାର ହୋଇଯାଇଛନ୍ତି କେଉଁ ଏକ ଅଜ୍ଞାତ ପ୍ରେମିକ ସାଙ୍ଗରେ ! ଗୋଟିଏ ମାତ୍ର ମୁହୂର୍ତ୍ତରେ ହୀରେନଙ୍କ ପୃଥିବୀରେ ସବୁକିଛି ବଦଳି ଯାଇଥିଲା । ସେଦିନ ସେ ତିନୋଟି ଶବର ଦାହସଂସ୍କାର କରିଥିଲେ- ଦୁଇଟି ମଣିଷର, ଗୋଟିଏ ସମ୍ପର୍କର ।

ଜୀବନ ତାଙ୍କ ପାଇଁ କିଛି ଅବଶେଷ ରଖିନଥିଲା ପାଞ୍ଚବର୍ଷର ଝିଅଟିକୁ ଛାଡ଼ି । ହୀରେନ ବଞ୍ଚିବାର ପ୍ରୟାସ କଲେ ତା'ର କଥାକୁହା ଆଖି ଓ ଦରୋଟି କଥାକୁ ନେଇ । ସେ ପାଲଟିଗଲେ, ତା'ର ବାପା, ମା', ସାଥୀ, ସମ୍ପର୍କୀୟ ସବୁକିଛି । କିଛି କିଛି ସଜାଡ଼ିହେଲା ଜୀବନ ।

ତେବେ ପୁଣି କାହିଁକି ସାଧୁ ହୀରେନ ସୈତାନ ପାଲଟିଗଲେ ? କେଉଁ ମୁହୂର୍ତ୍ତରେ ?

ବଞ୍ଚିବାର ମାଧ୍ୟମଟିଏ ଥିଲା ତାଙ୍କର । ତା' ଆଖପାଖରେ ଘୂରି ବୁଲୁଥିଲେ ସେ । ଝିଅକୁ ନେଇ ତାଙ୍କର ରାତି ଓ ସକାଳ । ତାକୁ ନେଇ ଶେଷ ଓ ଆରମ୍ଭ । ତା'ରି

ପାଖରେ ତାଙ୍କର ଅନ୍ଧାର ଓ ଆଲୁଅ ।

ଝିଅ ବଡ଼ ହେଉଥିଲା । ହୀରେନ ସ୍ୱପ୍ନବିଭୋର ଥିଲେ । ନିଃଶ୍ୱାସମାନଙ୍କୁ ସଞ୍ଚୁଥିଲେ ସେ ତା'ର ଭବିଷ୍ୟତ ପାଇଁ । ସବୁ କିଛି ଚାଲିଥିଲା ଠିକ୍ ଠାକ୍ ।

ପୁଣିଦିନେ ବଦଳିଯାଇଥିଲା ସବୁ କିଛି ଯୋଉଦିନ ହୀରେନ ଜାଣିପାରିଥିଲେ ଯେ ଝିଅ ତାଙ୍କର ଅନ୍ତଃସତ୍ତ୍ୱା । କେଉଁ ଏକ ଲମ୍ପଟ ଯୁବକର ପାପ ଗର୍ଭକୁ ସାଙ୍ଗରେ ଧରିଛି ସେ । ଦୁଃଖ ଓ ପ୍ରତାରଣା ମାନେ ଏଭଳି ନିଜ ଆଶ୍ଳେଷ ଭିତରକୁ ନେଉଥିଲେ ତାଙ୍କୁ ବାରମ୍ବାର ଯେ ସେଥିରୁ ହୁଏତ ଆଉ ମୁକୁଳିବାର ବାଟ ନଥିଲା, ପାଦ ତଳୁ ମାଟି ଧସି ଯାଉଥିଲା ତାଙ୍କର ।

ସେ ଖୋଜିବାହାର କରିଥିଲେ ଝିଅର ପ୍ରେମିକକୁ । ଅଜ୍ଞାତ କୁଳଶୀଳ ଯୁବକ ଥିଲା ଏକ ଅଯଥା ଅବସ୍ଥିତି । ରାସ୍ତାକଡ଼ର ନାମହୀନ ବାରବୁଲା । ଜୀବନ ଭଳି କିଛି ହୀରେନଙ୍କ ଝିଅକୁ ଦେବାର ସାମର୍ଥ୍ୟ ହିଁ ନଥିଲା ତା'ର । କିଛି ଭାଗ୍ୟ ନିର୍ଦ୍ଧାରିତ ହୋଇ ଆସିଥାଏ ଯାହାକୁ କେହି ବଦଳାଇ ପାରନ୍ତି ନାହିଁ ।

ଭିନ୍ନ, ବ୍ୟତିକ୍ରମ ହେବ ବୋଲି ହୀରେନ୍ ଝିଅର ନାଁ ଦେଇଥିଲେ 'ଅନନ୍ୟା' । ଗୋଟିଏ ଦରଦୀ ବାପର ହୃଦୟକୁ ଖିନ୍‌ଭିନ୍ କରି ପ୍ରକୃତରେ ସେ ହୋଇଥିଲା ଅସାମାନ୍ୟ, ଝିଅ, ଜ୍ୱାଇଁ ଓ ସେମାନଙ୍କର ସନ୍ତାନ ଏବେ ରହିନ୍ତି ହୀରେନଙ୍କ ପାଖରେ । ସେହି ଯୁବକ କୁଆଡ଼େ ଯାଏ ଦିନ ଦିନ ଧରି । ଫେରେ ଅଚାନକ ଏକ ଝଞ୍ଜା ପରି । ନିଶାଗ୍ରସ୍ତ, ଇତସ୍ତତଃ । ତା'ର ଉପସ୍ଥିତି, ଅନୁପସ୍ଥିତିର କୌଣସି ଅର୍ଥନଥାଏ । ଏମିତି ଗୋଟିଏ ସ୍ଥାନକୁ କ'ଣ ଘର କୁହାଯାଇପାରେ ଯୋଉଠିକି ହୀରେନ ଇଚ୍ଛାକରି ଫେରୁଥାନ୍ତେ ? ସେ ପାଲଟି ଯାଇଥିଲେ ଏକ ଅନିର୍ଦ୍ଦିଷ୍ଟ ଯାଯାବର । ଏତେ ଗୁଡ଼ାଏ ଦୁଃଖ ତାଙ୍କୁ କ୍ରମଶଃ ଅବିଚଳିତ କରିଦେଇଥିଲା । ଘର ବାହାରେ ଥିବା ସମୟତକ ସେ ଆନନ୍ଦରେ ବିତାଉଥିଲେ ଓ ଘରେ କ'ଣ ଘଟୁଛି, ସେଥିପ୍ରତି ନିସ୍ପୃହ ରହୁଥିଲେ । ଘରକୁ ଫେରିଲେ ଦେଖୁଥିଲେ, ସେଠି ଆସର ଚାଲିଛି । ଘର ପାଲଟି ଯାଇଛି ମଧୁଶାଳା ଓ ଅନନ୍ୟା ନିଜ ହାତରେ ପରଶି ଦେଉଛି ପାନୀୟ ତା' ସ୍ୱାମୀର ତଥାକଥିତ ବନ୍ଧୁମାନଙ୍କୁ ।

ତାଙ୍କ ନିସ୍ପୃହତା ଜମାଟ ବାନ୍ଧି ବାନ୍ଧି ଅଗ୍ନିଶିଖାରେ ରୂପାନ୍ତରିତ ହୋଇଗଲା କେଉଁ ଏକ ମୁହୂର୍ତ୍ତରେ । କାହାରିକୁ ରୋକିପାରିବାର ସାମର୍ଥ୍ୟ ନାହିଁ ଜାଣିବାରେ ସେ ଭିତରେ ଭିତରେ କୁହୁଳିବାକୁ ଲାଗିଲେ । ତାଙ୍କ ଆୟରୁ ଛଦାମଟିଏ ବି ଆଉ ଖର୍ଚ୍ଚ ହେଉନଥିଲା ଘରେ । ଏମିତି ହେବାକୁ ଦେଉ ନଥିଲେ ସେ । ଜ୍ୱାଇଁର ରୋଜଗାରର ପନ୍ଥା ବା କ୍ଷମତା ନଥିଲା । ସେପଟେ ହୀରେନ ଋଣ ଶୁଝୁଥିଲେ । ଅନନ୍ୟା ଅନୁରୋଧ କରିଥିଲା ହୀରେନ୍‌ଙ୍କୁ । କିନ୍ତୁ ତାଙ୍କ କଷ୍ଟୋପାର୍ଜିତ ଆୟକୁ ସେ ଏମିତି ସମ୍ବନ୍ଧୀମାନଙ୍କ ପାଇଁ ଖର୍ଚ୍ଚ କରିବାକୁ ରୋକ୍‌ଠୋକ୍ ମନା କରି ଦେଇଥିଲେ । କେତେ ବା ଦେଇପାରିଥାନ୍ତେ ସେ ଯଦି ଦେଇଥା'ନ୍ତେ ? ଆଉ କୌଣସି ମୋହ ଅବଶୋଷ ନଥିଲା ତାଙ୍କ ପାଖରେ ।

ଅରବିନ୍ଦ ତା' ଜଳଖିଆ ଶେଷ କରିଥିଲା ସେତେବେଳକୁ । ଘଣ୍ଟାକୁ ଚାହିଁଲା ସେ । ଟ୍ରେନ୍ ଆସିବାର ସମୟ ହୋଇଗଲାଣି । ପୁଣି ପ୍ଲାଟଫର୍ମ ଆଡ଼କୁ ଚାଲିବାକୁ ଆରମ୍ଭ କଲେ ସେମାନେ । ଚାରିଆଡ଼େ ଆଲୁଅର ରୋଷଣୀ । ଚାଲୁ ଚାଲୁ ଅରବିନ୍ଦ ପଚାରିଲା- "ଆପଣ ଦରମା ଟଙ୍କା ସେମାନଙ୍କୁ ଦେବେ ନାହିଁ ବୋଲି ଶେଷକୁ ଏମିତି ଏକ ଜଘନ୍ୟ କାମକୁ ଆଦରି ନେଲେ ? ନୀରିହ ଝିଅମାନଙ୍କର ଦେହ ବେପାର ? ?" ହୀରେନ ହସିଲେ । ଅନେକ ଅର୍ଥକୁ ବୁଝାଉଥିଲେ ଏକ ରହସ୍ୟମୟ ହସ । ଅବ୍ୟକ୍ତ, ଅକୁହା ଖୁବ୍ ଗୁଡ଼ାଏ କଥା ଲୁଚି ରହିଥିଲା ତା'ଭିତରେ । ସେମାନେ ପ୍ଲାଟଫର୍ମରେ ପହଞ୍ଚସାରିଥିଲେ । ଟ୍ରେନ୍ ପହଞ୍ଚିବାର ତୃତୀୟ ଘଣ୍ଟା ବାଜି ସାରିଥିଲା ।

ନିର୍ବିକାର ଭାବରେ ହୀରେନ କହିଲେ- "ଆପଣ ସମ୍ମତ ଜଣାଇଥିଲେ କିଏ ଆପଣଙ୍କ ପାଖକୁ ଯାଇଥାନ୍ତା ଜାଣନ୍ତି ? ମୋ ଝିଅ ଅନନ୍ୟା !!! ଆଉ ତାକୁ ତା' ସ୍ୱାମୀ ସେଠି ଛାଡ଼ି ଦେଇ ଆସିଥାନ୍ତା !!!"

ଅରବିନ୍ଦ କଥାଟାକୁ ଠିକ୍ ଶୁଣିପାରିଛି ବୋଲି ବିଶ୍ୱାସ କରିପାରିଲା ନାହିଁ । ନିସ୍ତବ୍ଧ ହୋଇଯାଇଥିଲା ସେ । ଏହାଠାରୁ ଆଉ ଅବିଶ୍ୱସନୀୟ କଥାଟାଏ କେବେ ଶୁଣିଥିବା ପରି ମନେ ପଡ଼ିଲା ନାହିଁ ତା'ର ।

ସେ ଧରିବାକୁ ଥିବା ଟ୍ରେନ୍‌ଟି ଏତିକିବେଳେ ପ୍ରବେଶ କଲା ପ୍ଲାଟଫର୍ମରେ । ଅରବିନ୍ଦ ପ୍ରକୃତିସ୍ଥ ହୋଇ ନିଜ କମ୍ପାର୍ଟମେଣ୍ଟଟିକୁ ଖୋଜି ପାଇଗଲା । ପଛରେ ହୀରେନ ତା' ବ୍ୟାଗ୍‌ଟିକୁ ଧରି ଆସୁଥାନ୍ତି । ବଗି ଉପରକୁ ଚଢ଼ିଯାଇ ହୀରେନ୍‌ଙ୍କ ହାତରୁ ବ୍ୟାଗଟିକୁ ନେଉ ନେଉ ଅରବିନ୍ଦ ପଚାରିଲା- "ଆପଣ କ୍ୱାଇଁ ପାଇଁ କାରଣଟିଏ ଥାଇପାରେ ହୁଏତ, କିନ୍ତୁ ଆପଣ... କାହିଁକି ?"

ସିଧାସଳଖ ତା ମୁହଁକୁ ଚାହିଁ ହୀରେନ କହିଲେ- "ଭାଗ୍ୟ ଉପରେ ପ୍ରତିଶୋଧ ନେବା ପାଇଁ..."

ଟ୍ରେନ୍ ଚାଲିବାକୁ ଆରମ୍ଭ କରିଥିଲା । ଅରବିନ୍ଦ ପ୍ଲାଟଫର୍ମ ଉପରେ ଠିଆ ହୋଇଥିବା ହୀରେନଙ୍କୁ ନିର୍ବିଷ୍ଟ ଚିତ୍ତରେ ଚାହିଁଥିଲା ଭିତରକୁ ନ ଯାଇ । ହୀରେନ ମନେ ହେଉଥିଲେ ଜଣେ ସାଧୁ ତପସ୍ୱୀ ପରି ।

ଅଚାନକ ଆଲୁଅ ଲିଭିଯାଇ ସମଗ୍ର ଇଲାକାଟି ବୁଡ଼ିଗଲା ଅନ୍ଧାର ଭିତରେ ଠିକ୍ ଏତିକିବେଳେ । ଟ୍ରେନ୍ ଷ୍ଟେସନ ଛାଡ଼ି ସାରିଥିଲା ।

# କଳଙ୍କ

ଯୁଗଳକିଶୋର ଦତ୍ତ

ପୁଣିଥରେ ଦେଖାହେବ ବୋଲି ତୁମେ କ'ଣ ଭାବିଥିଲ ? କିନ୍ତୁ ତୁମେ ଆସିଥିଲ ଓ ମୋ ସହିତ ଦେଖା ହୋଇଥିଲା ।

ଜୀବନପଥ ବହୁତ ଲମ୍ବା । ଆଉ ଏଇ ବାଟରେ ଅନେକଙ୍କ ସାଥିରେ ଦେଖାହୁଏ: କିନ୍ତୁ ତୁମ ସହିତ ମୋର ଯେ ଦିନେ ଆକସ୍ମିକ ଦେଖା ହେବ, ଆଉ ତୁମେ ମୋ ମନତଳେ ଗୋଟାଏ ଗଭୀର ରେଖାପାତ କରି ପାରିବ, ସେ କଥା କ'ଣ ମୁଁ ଭାବିଥିଲି ? ଅନେକ ଆସନ୍ତି । ପରିଚୟ ପରେ ସେମାନଙ୍କୁ ଭୁଲି ହୋଇଯାଏ । ମନର ଅତଳତଳେ ସେମାନଙ୍କୁ ଖୋଜିଲେ ମଧ୍ୟ ସେମାନଙ୍କର କଥା ମନେପଡ଼େ ନାହିଁ ।

କିନ୍ତୁ ତୁମେ... । ତୁମେ ମୋ ମନତଳେ ସବୁଦିନ ଲାଗି ବସା ବାନ୍ଧିଦେଇ ଯାଇଥିଲ... ।

ମୋର ଜଣେ ବନ୍ଧୁଙ୍କ ଅନୁରୋଧରେ ଗୋଟିଏ ଚଳଚ୍ଚିତ୍ର ପ୍ରସ୍ତୁତ କରିବାଲାଗି କେତେଜଣ ଅଭିନେତ୍ରୀ ଆବଶ୍ୟକ ବୋଲି ଖବରକାଗଜରେ ବିଜ୍ଞାପନ ଦେଇଥିଲି । ମୋର ଷ୍ଟୁଡ଼ିଓରେ ଅଭିନେତ୍ରୀମାନଙ୍କୁ ଦେଖା କରିବା ଲାଗି ମଧ୍ୟ ନିର୍ଦ୍ଦେଶ ଦିଆଯାଇଥିଲା । ତୁମେ ସେହି ବିଜ୍ଞାପନ ପଢ଼ି ମୋରି ଷ୍ଟୁଡିଓକୁ ଆସିଥିଲି । ତୁମ ସହିତ ପୁଣି ମୋର ଦେଖା ହୋଇଥିଲା ।

ତାରିଖ ଆଉ ମସିହା ମନେ ନାହିଁ; କିନ୍ତୁ ମନେଅଛି ତୁମେ ଆସିଥିଲା । ତୁମକୁ ନିରେଖି ଚାହିଁଥିଲି । ମନେ ହେଉଥିଲା ତୁମ ସହିତ ମୋର କେଉଁଠି ବୋଧ ହୁଏ ଅନେକଦିନ ତଳେ ଦେଖା ହୋଇଥିଲା ।

ଅବଶ୍ୟ ହଠାତ୍ ସେମିତି କିଛି ମନେପଡ଼ି ନ ଥିଲା; କିନ୍ତୁ ତୁମ ଆଖି ଅନେକ କଥା ମନେ ପକାଇ ଦେଉଥିଲା ।

ପଚାରିଥିଲି- ତୁମେ ମୋତେ ଚିହ୍ନି ପାରୁଛ । କିଛିକ୍ଷଣ ମୋ ମୁହଁକୁ ଚାହିଁ ପଚାରିଥିଲ- କେବେ କେଉଁଠି ଦେଖା ହୋଇଥିଲା କହିଲେ ?

ମୁଁ ଟିକିଏ ଚୁପ୍ ରହିଥିଲି । ମନେ ହେଉଥିଲା କହିବାକୁ, ଯଦି ଚିହ୍ନି ନ ପାରୁଛ ତେବେ ଥାଉ ।

କିନ୍ତୁ ହସି ହସି କହିଥିଲି, ସେ କଥା ତୁମର ମନେରହିବା କଥା ।

ଲକ୍ଷ୍ୟ କରିଥିଲି ତୁମେ ଯେପରି ଖୁବ୍ ଅପ୍ରସ୍ତୁତ ହୋଇ ଉଠିଥିଲ । କିଛିକ୍ଷଣ ଯେପରି ପାଶୋରି ଯାଇଥିବା କଥାକୁ ମନେ ମନେ ଭାବିବାକୁ ବସିଯାଇଥିଲ । ମୋ ମୁହଁକୁ ଥରେ ଚାହିଁ ପୁଣି ଥରେ ମୁହଁ ପୋତି ନେଇଥିଲ । ଲକ୍ଷ୍ୟ କରିଥିଲି, ତୁମେ ପଙ୍ଖା ତଳେ ବସି ମଧ୍ୟ ଝାଳରେ ତିନ୍ତି ଯାଇଥିଲ । ତୁମ ଆଖି ଦୁଇଟିକୁ ଦେଖି ମନେ ହେଉଥିଲା, ତୁମେ ସତେ ଯେପରି ତୁମର ହଜିଯାଇଥିବା ଅତିତକୁ ଫେରି ପାଇଥିଲ ।

ଆଉ ବୋଧହୁଏ ଅତୀତର ଖାପଛଡ଼ା କଥାଗୁଡ଼ାକ ତୁମର ମନେପଡ଼ି ଯାଇଥିଲା ।

ପୁଣିଥରେ ମୋ ମୁହଁକୁ ଚାହିଁବାକୁ ଚେଷ୍ଟା କରିଥିଲ; କିନ୍ତୁ ଭଲ କରି ଚାହିଁ ପାରି ନଥିଲ ।

ମୁଁ ଅନୁମାନ କରି ନେଇଥିଲି ତୁମେ ଯେପରି ମୋତେ କିଛି କହିବାକୁ ଇଚ୍ଛା କରିଥିଲ ।

ମୁଁ ପଚାରିଥିଲି, କିଛି କହିବ । କିନ୍ତୁ ତୁମେ ମୋତେ ଅନ୍ୟକଥା ପଚାରିଥିଲ ।

ପଚାରିଥିଲ- ମୋର ତେବେ କ'ଣ ହେଲା ।

ମୁଁ କହିଥିଲି- ତୁମେ ଆଜି ଯାଅ, ପରେ ମୁଁ ଜଣାଇଦେବି ।

ତୁମେ ହାତ ବ୍ୟାଗ୍‌ଟିକୁ ପିଠି ଉପରେ ପକାଇ ହଲି ହଲି ମୋର ଷ୍ଟୁଡ଼ିଓ ଭିତରୁ ବାହାରି ଯାଇଥିଲ । ତୁମର ଯିବା ପଥକୁ ଅନାଇଥିଲି । ବର୍ଷା ମୁଖର ରାତିରେ ତୁମେ ମୋତେ ତୁମ ଘରେ ବସାଇ ଦେଇ ଠିକ୍ ଯେପରି ଚାଲିଯାଇଥିଲ ।

ତୁମର କ'ଣ ସବୁକଥା ମନେ ପଡୁଥିଲା ? ତୁମେ କ'ଣ ମନେ ପକାଇଥିଲ ଯେ ସେଦିନ ବର୍ଷାମୁଖର ରାତିରେ ରେଳ ଷ୍ଟେସନରେ ଅସହାୟ ହୋଇ ମୁଁ ଯେତେବେଳେ ଟିକିଏ ଆଶ୍ରୟ ପାଇଁ ବ୍ୟସ୍ତ ହୋଇ ଉଠିଥିଲି, ସେତେବେଳେ ତୁମେ ଆଗେଇ ଆସି ପଚାରିଥିଲ- କିପରି ଆଶ୍ରୟ ଚାହାଁନ୍ତି ।

ଏତେ ରାତିରେ ଗୋଟିଏ ତରୁଣୀର ପ୍ରଶ୍ନରେ ମୁଁ ଆଶ୍ଚର୍ଯ୍ୟ ହୋଇଯାଇଥିଲି । ସୁଟକେଶ୍‌ଟି ମୋ ହାତରୁ ନେଇ କହିଥିଲ, ମୋ ପଛେ ପଛେ ଆସନ୍ତୁ । ବାଟ ସାରା କେହି କାହା ସହିତ ପଦେ ମଧ କହି ନ ଥିଲ । ମୋତେ କୌଣସି କଥା କହିବାର ନ ଦେଇ ଖାଲି ତୁମକୁ ଅନୁସରଣ କରିବାକୁ କହିଥିଲ । ତୁମର ମନେଥିବ, ଗୋଟିଏ ଛୋଟ ଘରେ ମହମବତୀର ଆଲୁଅରେ ମୋତେ ବସିବାକୁ କହି ତୁମେ ଘର ଭିତରକୁ ଚାଲିଯାଇଥିଲ । ମୁଁ ଘରର ଚାରିପଟକୁ ଚାହିଁ ଦେଖିଥିଲି । ମନେ ମନେ ଭୟ କରିଥିଲି । ଭାବିଥିଲି ଏଠାରେ କୌଣସି ବିପଦର ଆଶଙ୍କା ନାହିଁ ତ ? କିଛିକ୍ଷଣ ପରେ ଯାହାଙ୍କୁ ତୁମେ ସାଥିରେ ନେଇ ମୋ ପାଖକୁ ଆସିଥିଲ ସେ ଥିଲେ ତୁମର ମା ।

ବୟସ ବେଶି ହୋଇ ଯାଇଥିଲା । ମୋତେ କହିଥିଲେ- ଏଇ ଘରେ ଶୋଇଯାଅ, ଟିକିଏ ଅସୁବିଧା ହେବ । ମୋ ଖାଇବା ପାଇଁ ରୁଟି ଆଉ କ୍ଷୀରର ବ୍ୟବସ୍ଥା କରିବା ଲାଗି ମୋ ପାଖରୁ ଟଙ୍କା ପାଞ୍ଚୋଟି ନେଇ ଯିବାବେଳେ ତୁମକୁ କହିଥିଲେ- ସ୍ୱପ୍ନା, ଏହାଙ୍କ ପାଖରେ ବସିଥାଅ ।

ମୁଁ ଘଡ଼ିକୁ ଦେଖିଥିଲି । ସେତେବେଳକୁ ରାତି ବାରଟା ବାଜିଯାଇଥିଲା । ବାହାରେ ବର୍ଷାର ଗତି ବଢ଼ିଯାଇଥିଲା । ଭଙ୍ଗା ଝରକା ଦେଇ ପାଣିଛିଟା ଘର ଭିତରକୁ ଆସୁଥିଲା । ମୁଁ ଟିକିଏ ଘୁଞ୍ଚି ବସିବାକୁ ଚେଷ୍ଟା କରିଥିଲି; କିନ୍ତୁ ତୁମେ ମୋ ପାଖକୁ ଆହୁରି ଲାଗିଆସି କହିଥିଲ, ଏ ପାଖକୁ ଆସନ୍ତୁ ଦୁଆରଟା ଭଙ୍ଗା । ସେତିକିବେଳେ ଦମକାଏ ପବନରେ ମହମବତୀଟା ଲିଭିଯାଇଥିଲା ।

ମୋର ମନେ ହେଉଥିଲା ଏଇଟା ଗୋଟାଏ କିଛି ଷଡଯନ୍ତ୍ର ନୁହେଁ ତ ? କିନ୍ତୁ ତୁମେ ଅନ୍ଧାର ଭିତରେ ଅଣ୍ଡାଳି ଅଣ୍ଡାଳି ମୋ ହାତକୁ ଧରି କହିଥିଲ ଭୟ କରନ୍ତୁ ନାହିଁ । ମୁଁ ଡିଆସିଲି ଆଣୁଛି । ଡିଆସିଲି ଆଣି ମହମବତୀ ଜାଳିବା ପରେ ମୁଁ ଯାହାକୁ ଦେଖିଥିଲି ସେଥିରେ ମୁଁ ଆହୁରି ସ୍ତମ୍ଭୀଭୂତ ହୋଇ ଯାଇଥିଲି । ସେ ଥିଲା ଫ୍ରକ୍ ପିନ୍ଧା ଝିଅଟିଏ । ଅଳ୍ପ ଆଲୁଅରେ ଯାହା ଦେଖିଲି ସେଥିରେ ମୋର ମନେହେଉଥିଲା- ବୟସ ଅଳ୍ପ ନୁହେଁ, ତୁମଠାରୁ ପ୍ରାୟ ଗୋଟାଏ କିମ୍ବା ଦୁଇଟା ବର୍ଷର ତଫାତ୍ ହେବ ।

ମୋର ଚାହାଁଣୀ ଦେଖି ଝିଅଟି ହସିଉଠିଥିଲା । କହିଥିଲା, ଯାଦୁଖେଳ ବୋଧହୁଏ ଦେଖୁଛନ୍ତି ନୁହେଁ; କିନ୍ତୁ ମୋ ନାମ ରତ୍ନା ।

ମୁଁ ବୁଝିପାରିଥିଲି ସେ ଥିଲା ତୁମର ସାନ ଭଉଣୀ ।

ବେଶ୍ ଦୁଇଟି ନାମ । ସ୍ୱପ୍ନା- ଆଉ ରତ୍ନା । ଘଡ଼ି ଦେଖିଲି, ରାତି ଦେଢ଼ଟା । ତୁମର ମା' ଆସି ଖାଇବାକୁ ଦେଇଥିଲେ, ମୁଁ ଅଳ୍ପ ଟିକିଏ ଖାଇଥିଲି । କାରଣ ଏତେ ରାତିରେ ଖାଇବାକୁ ମନ ହୋଇ ନଥିଲା ।

ଅନେକ କିଛି ପଚାରିବ ବୋଲି ଭାବିଥିଲି; କିନ୍ତୁ ପଚାରି ପାରି ନ ଥିଲି । ତୁମର ମା' ଚାଲି ଯାଇଥିଲେ; କିନ୍ତୁ ରହିଯାଇଥିଲା ରତ୍ନା । ତୁମେ ଆଉ ମୋତେ ଦେଖା ଦେଇ ନ ଥିଲ । ଘଡ଼ିକୁ ଦେଖିଥିଲି । ଦୁଇଟା ବାଜିବାକୁ ଦଶମିନିଟ୍ ବାକୀ । ନିଦରେ ମୋ ଆଖିପତା ଲାଗି ଆସୁଥିଲା । ରତ୍ନା ମୋ ପାଖକୁ ଆସି କହିଥିଲା, ଶୋଇପଡ଼ନ୍ତୁ । ମୁଁ ଗୋଡ଼ରେ ହାତ ବୁଲାଇ ଦେଉଛି । ମୁଁ ଗୋଡ଼ ଦୁଇଟିକୁ ଟାଣି ନେଇ କହିଥିଲି ନା, ଆଉ ତୁମେ ଯାଅ । ମୁଁ ଦୁଆର ଦେଇ ଶୋଇବି । ଖିଲି ଖିଲି ହୋଇ ହସି ଉଠିଥିଲା ରତ୍ନା । କହିଥିଲା- ଏମିତି ଘରେ ରହିବାର ବୋଧହୁଏ ଆପଣଙ୍କର କେବେ ଅଭ୍ୟାସ ନ ଥିଲା । ବାରିନ୍ ଭାଇ ଆସିଲେ କିନ୍ତୁ ଏଇ ଘରେ ରୁହନ୍ତି । ଆଉ ଅପା ସାରାରାତି ତାଙ୍କରି ପାଖରେ ବସି ଏମିତି ଗୋଡ଼ରେ ହାତ ବୁଲାଇ ଦିଏ ।

ମୋ ମନତଳେ ସେ ଦିନ କୌତୂହଳ ହୋଇଥିଲା । ଆଉ ସେ କଥା ମଧ୍ୟ ମୁଁ ତୁମକୁ ପଚାରି ଦେଇଥିଲି, ଯେତେବେଳେ ତୁମେ ଦୁଆର ପାଖରେ ଆସି ଠିଆ ହୋଇଥିଲ । ତୁମେ କିନ୍ତୁ ରତ୍ନାର ଯିବା ପଥକୁ ଥରେ ଚାହିଁ ଆଉ ଥରେ ମୋ ମୁହଁକୁ ଚାହିଁଥିଲ ।

ତୁମେ ମଧ୍ୟ କୌଣସି ସଙ୍କୋଚ ନ ରଖି ବାରିନ୍ ସେନ ସମ୍ପର୍କରେ ମୋତେ ସବୁ କିଛି କହିଥିଲ । ସେ ଦିନ ମୋର କ'ଣ ମନେ ହୋଇଥିଲା ଜାଣ, ? ମନେ ହୋଇଥିଲା ଗୋଟିଏ ତରୁଣୀକୁ ଭଲ ପାଇବାର ଏମିତି ସୌଭାଗ୍ୟ ଯଦି ମୋ ଜୀବନରେ ଆସିଥାଆନ୍ତା ତେବେ ମୁଁ ମଧ୍ୟ ନିଜକୁ ଭାଗ୍ୟବାନ ବୋଲି ମନେକରି ଥାଆନ୍ତି ।

ତୁମକୁ ଏତେଦିନ ପରେ ଦେଖି ମୋ ମନତଳେ ଅନେକ କିଛି ପ୍ରଶ୍ନ ଜାଗିଥିଲା; କିନ୍ତୁ କିଛି ପଚାରି ପାରି ନଥିଲି ।

କିଛିଦିନ ପୁଣି ବିତିଯାଇଥିଲା । ତାରିଖଟା ମୋର ମନେ ନାହିଁ; କିନ୍ତୁ ତୁମେ ବର୍ଷାରେ ଭିଜି ଭିଜି ଆସିଥିଲ । ସେ କଥା ମୋର ମନେଅଛି । ଏମିତି ବର୍ଷାମୁଖର

ସକାଳରେ ବିଛଣାରେ ଶୋଇ ଗୋଟାଏ ବହି ପଢୁଥିଲି, କଲିଙ୍ଗ୍ ବେଲ୍ ବାଜିବା ଶୁଣି ଉଠିଆସି ଦୁଆର ଖୋଲି ଦେଇଥିଲି । ତୁମେ ସିଧା ମୋ ଘର ଭିତରକୁ ଆସି ଚାରିଆଡ଼କୁ ଚାହିଁ ପଚାରିଥିଲ ଘରେ ଆଉ କ'ଣ କେହି ନାହାନ୍ତି ।

ମୁଁ ତୁମ ମନ କଥା ବୁଝିପାରି ଉତ୍ତର ଦେଇଥିଲି- ହଁ ଏବେ ମଧ୍ୟ ଗୋଟିଏ ନାରୀର ହୃଦୟ ଜୟ କରିବାର ଅଧିକାର ମୋତେ କେହି ଦେଇ ନାହିଁ ।

ତୁମେ ବର୍ଷାରେ ଏକବାରେ ଓଦା ହୋଇ ଯାଇଥିଲ । ମୋର ଖଣ୍ଡିଏ ଧୋତି ନେଇ ତାକୁ ପିନ୍ଧି ମୋର ଖଟରେ ବସି କହିଥିଲ- ବଡ଼ ଆଶ୍ଚର୍ଯ୍ୟ ହେଉଛନ୍ତି ନୁହେଁ ! ଆଉ ମଧ୍ୟ ଖୁବ୍ ଖରାପ ଭାବୁଥିବେ ?

ସେ ଦିନଟା ତୁମେ ମୋରି ପାଖରେ କଟାଇ ଦେଇଥିଲ । ତୁମର ସମସ୍ତ ଇତିହାସ ମୋତେ କହିଥିଲ । ଶୁଣିଥିଲି ରତ୍ନା, ବାରିନ୍ ସାଥିରେ ଘରଛାଡ଼ି ଚାଲି ଯାଇଛି । ଆଉ ବୁଝି ପାରିଥିଲି ତୁମ ମନର କ୍ଷତକୁ । ତୁମେ ଆଉ ପୂରଣ କରି ପାରି ନ ଥିଲ ।

ପ୍ରତ୍ୟେକ ମଣିଷର ଜୀବନରେ ସମିତି ଗୋଟାଏ ଅନ୍ଧକାର ଥାଏ । କାହାରି ଜୀବନର ଗୋପନ କାହାଣୀ ଶୁଣିବା ପରେ ମନରେ ଆକ୍ଷେପ କରିବା କଥା ନୁହେଁ; କାରଣ ପ୍ରତ୍ୟେକ ଜୀବନର ଗୋଟାଏ ଦୁର୍ବଳ ମୁହୂର୍ତ୍ତରେ ମଣିଷ କିଛି ନା କିଛି ଭୁଲ କରିଥାଏ । ମୁଁ ତୁମ ଜୀବନର ଗୋପନ କାହାଣୀ ଶୁଣିଥିଲି । ଆଉ ବୁଝିପାରି ଥିଲି ତୁମର ଜୀବନର ଦୁର୍ବଳତା ପାଇଁ ତୁମ ମନତଳେ ଘୁଣ ଖାଇ ଯାଉଥିଲା ।

କିନ୍ତୁ ସେହି ମୁହୂର୍ତ୍ତଠାରୁ ତୁମକୁ ମୁଁ ଆହୁରି ନିବିଡ଼ ଭାବରେ ମନେ ମନେ ଭଲ ପାଇ ବସିଥିଲି ।

ମୁଁ ରତ୍ନାକୁ ଥରେ ପୁରୀ ସମୁଦ୍ର କୂଳରେ ଦେଖିଥିଲି । ଇଚ୍ଛାକରି ତାକୁ ଦେଖା ଦେଇ ନ ଥିଲି । ରତ୍ନା ସହିତ ସେଦିନ ଯେ ଥିଲେ ସେ ବୋଧହୁଏ ତେବେ ତୁମର ବାରିନ୍ ଭାଇ । ତୁମକୁ ଏକଥା କହି ପାରି ନ ଥିଲି; କାରଣ ତୁମେ ଆହୁରି ଦୁଃଖ ପାଇ ଥାଆନ୍ତ ।

ତୁମର ମା' ମଧ୍ୟ ମରି ଯାଇଛନ୍ତି ବୋଲି ତୁମଠାରୁ ଶୁଣିଥିଲି । ସାନ ଭାଇଟିକୁ ନେଇ ତୁମେ ସେହି ଭଙ୍ଗା ଘରେ ଏବେ ମଧ୍ୟ ଅଛ ବୋଲି ଶୁଣିଥିଲି ।

ତୁମପ୍ରତି ମୋ ମନ ତଳେ ଗୋଟାଏ ଦୁର୍ବଳତା ଜାଗିଥିଲା । ଯେଉଁ ଦୁର୍ବଳତା ମୁଁ ତୁମ ପାଖରେ ପ୍ରକାଶ କରି ପାରି ନଥିଲି, କିନ୍ତୁ ତୁମେ ସେକଥା ଜାଣିଥିଲ ।

ତୁମେ ସେଦିନ ଯିବା ପୂର୍ବରୁ ପୁଣି ପଚାରିଥିଲ- କେଉଁମାନଙ୍କୁ ଆପଣ ଚଳଚ୍ଚିତ୍ର ପାଇଁ ମନୋନୀତ କଲେ । କିନ୍ତୁ ମୋର ବିଶ୍ୱାସ, ଆପଣ ଅନ୍ୟମାନଙ୍କ ସହିତ ମୋତେ ନିଶ୍ଚୟ ସ୍ଥାନ ଦେବେ । ମୋ ଉପରେ ତୁମର ଏ ଅଗାଢ଼ ବିଶ୍ୱାସ କାହିଁକି ଯେ ହୋଇଥିଲା ମୁଁ ସେ କଥା ନିଜେ ମଧ୍ୟ ବୁଝିପାରି ନ ଥିଲି । କିନ୍ତୁ ତୁମର ବିଶ୍ୱାସକୁ ମୁଁ କ'ଣ ରଖି ପାରିଥିଲି ? ତୁମେ ବହୁତ ଥର ମୋ ପାଖକୁ ଆସିଛ । ନିଃସଙ୍କୋଚରେ ମୋ ପାଖରେ ବସି ରାତି ବିତାଇ ଦେଇଛ । ଯିବାବେଳେ ତୁମ ହାତରେ ତୁମର ଘରର ଅଭାବ ଲାଗି କିଛି ଟଙ୍କା ଦେଇଛି । ତୁମେ କୌଣସି ପ୍ରତିବାଦ ନ କରି ତାହା ନେଇଛ ।

ମୁଁ ଜାଣିଥିଲି ତୁମର ଅଭାବ କେଉଁଠି ? ବାରିନ୍ ସେନ୍ ତୁମର ଘରର ସମସ୍ତ ଖର୍ଚ୍ଚ ତୁଲାଇ ନେଉଥିଲା । ଆଉ ତୁମେ ତାକୁ ଜୀବନରେ ସମସ୍ତ କିଛି ଉଜାଡ଼ି ଦେଇ ସଂସାର କରିବାର ସ୍ୱପ୍ନ ମଧ୍ୟ ଦେଖିଥିଲ । ତୁମର ମା' ମଧ୍ୟ ସେଇ ସ୍ୱପ୍ନ ନେଇ ବଞ୍ଚିଥିଲେ ।

କିନ୍ତୁ ରତ୍ନାକୁ ନେଇ ଯେଉଁଦିନ ବାରିନ୍ ସେନ୍ କେଉଁଆଡ଼େ ଚାଲି ଯାଇଥିଲା ସେଦିନଠାରୁ ତୁମେ ଦୁନିଆକୁ ଅବିଶ୍ୱାସ କରିବାକୁ ଆରମ୍ଭ କରିଥିଲ । କୌଣସି ପୁରୁଷକୁ ବୋଧହୁଏ ଆଉ ବିଶ୍ୱାସ କରିବାକୁ ତୁମ ମନ ହୋଇ ନଥିଲା ।

ପୁଣି କେତେବର୍ଷ ବିତି ଯାଇଥିଲା ଜାଣେନା । ତୁମ କଥା ପ୍ରାୟ ଭୁଲି ଆସୁଥିବା ବେଳେ ତୁମେ ପୁଣି ଦିନେ ଆସି ଠିଆ ହେଲ । ତୁମକୁ ଦେଖି ପଚାରିଥିଲି ବହୁତ ଦିନପରେ ପୁଣି ମନେପଡ଼ିଲା କିପରି ?

ତୁମର ଶୋଥା ମୁହଁକୁ ଦେଖି ଦୁଃଖ ହୋଇଥିଲା । ତୁମେ ମୋରି ଖଟ ଉପରେ ଶୋଇପଡ଼ି କହୁଣି ଉପରେ ମୁହଁ ରଖି ମୋ ଆଖି ଉପରେ ଆଖି ରଖି କହିଥିଲ- ଜାଣନ୍ତି, ରତ୍ନାର ଗୋଟିଏ ପୁଅ ହୋଇଛି । ସେ ବେଶ୍ ଭଲ ଅଛି । ମୁଁ ପଚାରିଥିଲି- କେଉଁଠି ତା ସହିତ ଦେଖା ହୋଇଥିଲା ?

ତୁମେ ଉତ୍ତର ନ ଦେଇ ଖାଲି ହସିଥିଲ । ତୁମ ମୁହଁରେ ଯେଉଁ ହସଟିକକ ଦେଖିଥିଲି ତାହା ଥିଲା ଅତି କରୁଣ । ମୁଁ ସେତେବେଳେ ଅନୁଭବ କରିଥିଲି ଏମିତି ଗୋଟିଏ ବନ୍ଧନର ସ୍ୱପ୍ନ ତୁମେ ହୁଏତ ଦିନେ ଦେଖିଥିଲ । ତୁମ ମନ ଭିତରେ ଗୋଟିଏ ଭଲ ପାଇବାର ମନ ବସା ବାନ୍ଧିବାକୁ ଇଚ୍ଛା କରିଥିଲା ।

ତୁମର ମହଁକୁ ଚାହିଁ କିଛି ପଚାରିବା ପୂର୍ବରୁ ତୁମେ କହିଥିଲ-

ମୋତେ ଘୃଣା କରୁଛନ୍ତି ନୁହେଁ ?

ମୁଁ ଜବାବ୍ ଦେଇଥିଲି, ଘୃଣା ! ସେ ଜିନିଷଟାକୁ ମୁଁ ଏକବାରେ ଭୁଲି ଯାଇଛି ।

ପଚାରିଥିଲି- କେଉଁଦିନ ଠାରୁ ?

କହିଥିଲି-ଯେଉଁଦିନ ଠାରୁ ତୁମରି ପରି ଏମିତି ଗୋଟାଏ ମନକୁ ଭଲ ପାଇବାକୁ ଆରମ୍ଭ କରିଛି ।

ତୁମେ ଜାଣ, ତୁମ ପ୍ରତି ମୋ ମନ ତଳେ କ୍ଷଣିକ ଲାଗି ଦୁର୍ବଳତା ଜାଗିଥିଲା । କିନ୍ତୁ ତାହା ତୁମେ ଜାଣି ମଧ୍ୟ ମୋ ମନ ପ୍ରତି କୌଣସି ପ୍ରତିକ୍ରିୟା ବୋଧହୁଏ ତୁମ ମନ ତଳେ ଆସି ନଥିଲା । ତଥାପି ତୁମକୁ ମୁଁ ଖୁବ୍ ଭଲ ପାଇ ଯାଉଥିଲି । ଭଲ ପାଉଥିଲି ତୁମର ସେହି ମନଟାକୁ, ଯେଉଁ ମନ ନେଇ ତୁମେ ଦିନେ ଏଇ ଦୁନିଆକୁ ଚିହ୍ନିବାକୁ ଚାହିଁଥିଲ ।

ମୋର ବନ୍ଧୁଙ୍କର ଚଳଚ୍ଚିତ୍ରର ସୁଟିଂ ଆରମ୍ଭ ହୋଇଥିଲା । କିନ୍ତୁ ତୁମକୁ ସେହି ଚଳଚ୍ଚିତ୍ରରେ ଅଭିନେତ୍ରୀ ଭାବେ ସ୍ଥାନ ଦେଇ ପାରି ନଥିଲି । ଜଣେ ଫଟୋଗ୍ରାଫର ହିସାବରେ ମୁଁ ଶପଥ କରି କହିପାରିବି ଯେ ଅଭିନେତ୍ରୀ ହେବା ପାଇଁ ନାରୀର ଯେଉଁ ଲାବଣ୍ୟ, ସୌନ୍ଦର୍ଯ୍ୟ ଦରକାର, ତାହାଠାରୁ ତୁମର ଅଧିକ ଥିଲା । ତୁମରି ଫଟୋଗୁଡ଼ିକ ମୋର ବନ୍ଧୁଙ୍କୁ ଖୁବ୍ ଆକୃଷ୍ଟ କରିଥିଲା । ସେ ମଧ୍ୟ ତୁମକୁ ସ୍ଥାନ ଦେବା ପାଇଁ ମୋ ସହିତ ପରାମର୍ଶ କରିଥିଲେ । କିନ୍ତୁ ମୁଁ ଏଥିରେ ମୋର ସମ୍ମତି ଜଣାଇ ପାରିନଥିଲି ।

ଜାଣେନା, ମୋର ମନତଳେ ଏପରି ଦୁର୍ବଳତା ଆସିଲା କାହିଁକି। ଆଉ ମଧ ମୁଁ ବୁଝିପାରି ନଥିଲି, ତୁମକୁ ମୁଁ ଚଳଚ୍ଚିତ୍ରରେ କାହିଁକି ସ୍ଥାନ ଦେଇ ପାରିନଥିଲି। ତୁମେ କିନ୍ତୁ ବହୁତ ଥର ମୋ ପାଖକୁ ଆସିଛ। ମୋ ସହିତ ଦେଖା କରିଛ। ମୁଁ ବୁଝି ପାରିଥିଲି ତୁମେ ସେଥିଲାଗି ମନତଳେ ଦୁଃଖ ଅନୁଭବ କରିଥିଲ; କିନ୍ତୁ ମୋତେ କ'ଣ ତୁମେ କ୍ଷମା କରିପାରିଥିଲ ?

ମୁଁ ଜାଣେ ତୁମେ ମୋତେ କ୍ଷମା କରି ପାରିନଥିଲେ, ସେଦିନ ତୁମ ମନର ସମସ୍ତ ଗୋପନ କାହାଣୀ କ'ଣ ମୋତେ କହିପାରି ଥାଆନ୍ତ। ମୋର ବନ୍ଧୁ ଚଳଚ୍ଚିତ୍ର ପ୍ରସ୍ତୁତ କରି ସର୍ବସ୍ୱାନ୍ତ ହୋଇଥିଲେ। ଆଉ ମଧ ସେ ଚିତ୍ର ବେଶିଦିନ ଚାଲିପାରି ନଥିଲା। ତା ସହିତ ମୋ ଷ୍ଟୁଡ଼ିଓର ଅବସ୍ଥା ମଧ ଦିନକୁ ଦିନ ଶୋଚନୀୟ ହୋଇ ଉଠିଥିଲା। ମୁଁ ସେଠାରୁ ଷ୍ଟୁଡ଼ିଓ ଉଠାଇ ନେଇ ଚାଲି ଯାଇଥିଲି ବିକାନିର।

ଏହା ଭିତରେ ପୁଣି ପାଞ୍ଚଟି ବର୍ଷ ବିତି ଯାଇଥିଲା। ନିଜ ଦେଶଠାରୁ ବହୁତ ଦୂରକୁ ଆସି ମୁଁ ଯେପରି ମୋର ନୂତନ ଜୀବନ ପାଇଥିଲି। କାରଣ ମୋ ଜୀବନରେ କାହାରି ବନ୍ଧନ ନଥିଲା। ତୁମ କଥା ମୋର ଅନେକ ସମୟରେ ମନେ ପଡୁଥିଲା। କିନ୍ତୁ ତୁମେ କେବେ କଣ ମୋ କଥା ଭାବିଥିଲ ?

ଦିନେ ଖବର ପାଇଲି, ବିକାନିରର ଲାଲ ସାହେବ ସନ୍ଧ୍ୟାବେଳକୁ ରାଣୀମା'ଙ୍କୁ ନେଇ ଫଟୋ ଉଠାଇବା ଲାଗି ମୋରି ଷ୍ଟୁଡ଼ିଓକୁ ଆସିବେ। ସାରାଦିନ ଷ୍ଟୁଡ଼ିଓକୁ ସଜାଇବାରେ ଲାଗିଯାଇଥିଲି। କାରଣ କିଏ କହିପାରେ ରଜା ରାଜୁଡାଙ୍କ ମନକଥା। ଯଦି ମନ ମାନିଯାଏ ତ କ୍ଷଣକରେ ଏ ଷ୍ଟୁଡ଼ିଓର ରୂପ ଆଉ ଭାଗ୍ୟ ବହୁତ ବଦଳି ଯାଇପାରେ ?

ସନ୍ଧ୍ୟାବେଳକୁ ଲାଲ ସାହେବ ରାଣୀମା'ଙ୍କୁ ନେଇ ମଟରରୁ ଓହ୍ଲାଇଥିଲେ। ଲାଲସାହେବଙ୍କର ନିର୍ଦ୍ଦେଶ ଥିଲା, ଫଟୋଗୁଡ଼ିକ ଯେପରି ଖୁବ୍ ଭଲ ହୁଏ।

ମୁଁ ମୋର ସମସ୍ତ ଚେଷ୍ଟା ଓ କୌଶଳ କରି ଲାଲ ସାହେବଙ୍କ ଫଟୋ ଉଠାଇବା ପରେ ରାଣୀମା'ଙ୍କର ଫଟୋ ଉଠାଇବା ପାଇଁ ପ୍ରସ୍ତୁତ ହୋଇଥିଲି। କିନ୍ତୁ ରାଣୀମା'ଙ୍କର ମୁହଁକୁ ଚାହିଁ ବିଶ୍ୱାସ କରି ପାରିନଥିଲି ଯେ ଦୁନିଆରେ ଏତେ ରୂପ ଥାଇପାରେ... ମୋର ହାତ ଥରି ଉଠିଲା। କିଛିକ୍ଷଣ ନିର୍ବାକ୍ ହୋଇ ରାଣୀମା'ଙ୍କର ମୁହଁକୁ ଚାହିଁଥିଲି। ଲାଲସାହେବ ହସିଉଠିଥିଲେ। ମୁଁ ନିଜକୁ ପ୍ରକୃତିସ୍ଥ କରିଥିଲି ଆଉ ଫଟୋ କେତୋଟି ଉଠାଇଥିଲି। ଲାଲସାହେବ ମୋତେ ଦେବା ପାଇଁ ରାଣୀମା'ଙ୍କ ହାତକୁ ଟଙ୍କା ବଢ଼ାଇ ଦେଇଥିଲେ, ଆଉ ରାଣୀମା ସେଗୁଡ଼ିକ ମୋ ହାତରେ ଗୁଞ୍ଜି ଦେଇ ଚାଲି ଯାଇଥିଲେ। ମୋର ହାତ ଥରି ଉଠିଥିଲା। ମୁଁ ମନେ କରିଥିଲି ଭଗବାନଙ୍କର ମୋ ପ୍ରତି ଏହା ଉପହାସ ନୁହେଁ ତ ?

ମୁଁ ସେମାନଙ୍କର ଯିବା ବାଟକୁ ବହୁତ ସମୟ ଧରି ଚାହିଁଥିଲି।

ମୁଁ ଭାବି ପାରୁ ନଥିଲି, କିପରି ତୁମେ ବିକାନିରର ରାଜବଂଶରେ ରାଣୀମା ହୋଇ ସ୍ଥାନ ପାଇଥିଲ।

ପୁଣି ଦିନେ ସନ୍ଧ୍ୟାରେ ଜଣେ ଭୃତ୍ୟ ହାତରେ ପଠାଇଥିବା ତୁମରି ଚିଠି ପାଇଥିଲି, ଯେଉଁଥିରେ ତୁମେ ବିଶେଷ କିଛି ଲେଖି ନଥିଲ।

ଜଣେ ଫଟୋଗ୍ରାଫର ଭାବରେ ଫଟୋଗୁଡ଼ିକ ଭଲ ହୋଇଛି ବୋଲି ପ୍ରଶଂସାପତ୍ର ପଠାଇଥିଲ। କିନ୍ତୁ ଫଟୋଗ୍ରାଫର ସହିତ ତୁମର ଯେ ପୂର୍ବରୁ ପରିଚୟ ଥିଲା ତାହା ତୁମେ ସେ ଚିଠିରେ ଏକବାରେ ଆଡ଼େଇ ଯାଇଥିବାର ମୁଁ ଲକ୍ଷ୍ୟ କରିଥିଲି। ନିଜକୁ ନିଜେ ପ୍ରଶ୍ନ କରିଥିଲି, ଦୁନିଆରେ ଭଲ ପାଇବାର ମନ ବୋଲି କ'ଣ ତେବେ କିଛି ନାହିଁ? ସବୁକିଛି ତେବେ କ'ଣ ଛଳନା? ପ୍ରତାରଣା?

ମୋର ଭଲ ପାଇବାଟାକୁ ବୋଧହୁଏ ତୁମେ ତୁମ ମନତଳେ ଗ୍ରହଣ କରି ପାରିନଥିଲ। ତାହା ହୋଇଥିଲେ ଅନ୍ୟ ମନରେ ତୁମର ସମସ୍ତ ଭଲ ପାଇବା ଅଜାଡ଼ି ଦେଇ ତୁମେ ଆଜି ନିଜକୁ ଏତେ ଉଚ୍ଚରେ ପ୍ରତିଷ୍ଠିତ କରିପାରି ନଥାଆନ୍ତ। ତୁମେ ଦିନେ ନିଜକୁ ପ୍ରତିଷ୍ଠିତ କରିପାରିବ ଏ ବିଶ୍ୱାସ ମୋର ଥିଲା, ତେଣୁ ମୁଁ ଖୁବ୍ ଆନନ୍ଦିତ।

ମୋ ମନକୁ ଅଜାଡ଼ି ଦେଇଥିଲି ତୁମ ପାଖେ, ଆଉ ତୁମେ ତାକୁ ଯଦି ଗ୍ରହଣ କରି ପାରିଲ ନାହିଁ; ତେବେ ସମସ୍ତ ଦୋଷ ମୋର। କାରଣ ତୁମ ମନତଳେ କୌଣସି ଭାବନା ଜଗାଇବାର କ୍ଷମତା ହୁଏତ ମୋର ନଥିଲା। ତେଣୁ ତୁମେ ମୋର ଭଲ ପାଇବାଟାକୁ ଗ୍ରହଣ କରି ପାରିନଥିଲ; ହୁଏତ ତୁମେ ଆହୁରି ବଡ଼ ହେବାକୁ ଭାବିଥିଲ, ତେଣୁ ଆଜି ତୁମେ ଖୁବ୍ ବଡ଼ ହୋଇପାରିଛ।

ମୁଁ ଭାବିଛି ତୁମେ ଯେଉଁଠି ଥାଅନା କାହିଁକି ଭଲରେ ଥାଅ, ସୁଖରେ ଥାଅ।

ତାପରେ ଜୀବନ ପ୍ରତି ମୋର କିପରି ଗୋଟାଏ ବିତୃଷ୍ଣା ଆସିଥିଲା। ଦୁନିଆରେ ବଞ୍ଚି ରହିବାର ଇଚ୍ଛା ଦିନକୁ ଦିନ କମିଯିବାର ଲକ୍ଷ୍ୟ କରିଥିଲି। ଲେଖାଟି ଏଇଠି ଶେଷ ହୋଇଥିଲା।

ମୋର ବନ୍ଧୁ ସୁକୁମାର ସେନ୍ ପୋଲିସ୍ ସୁପରିଟେଣ୍ଡେଣ୍ଟ, ମୋ ପାଖକୁ ଏଇ ଲେଖାଟି ପଠାଇ ଦେଇଥିଲେ। ଲେଖାଟି ସହିତ ମଧ୍ୟ ଗୋଟିଏ ଚିଠି ଲେଖି ମୋତେ ଜଣାଇ ଦେଇଥିଲେ ଯେ, ଏଇ ଲେଖାଟି ଆଜକୁ ପାଞ୍ଚବର୍ଷ ତଳେ ରେଳ ଲାଇନରେ କଟିଯାଇଥିବା ଗୋଟିଏ ଲୋକର ବ୍ୟାଗ୍ ଭିତରୁ ପାଇଥିଲେ। ଚାକିରି ଜୀବନରେ ବହୁତ ଆତ୍ମହତ୍ୟା ସେ ଦେଖିଛନ୍ତି ଏବଂ ସେଗୁଡ଼ିକର ତଦନ୍ତ ମଧ୍ୟ କରିଛନ୍ତି। ଏମିତି ପ୍ରେମପତ୍ର ସେମାନଙ୍କର ପାଖରୁ ବହୁତ ପାଇଛନ୍ତି। କିନ୍ତୁ ଏ ଲେଖାଟି ପଢ଼ି ସେ ଭାବିଥିଲେ ଯେ ମୋର ପତ୍ରିକାରେ ଗଳ୍ପ ଭାବରେ ପ୍ରକାଶିତ ହେବା ଲାଗି ଉପଯୁକ୍ତ।

ମୁଁ ଏ ଲେଖାଟିକୁ ବହୁତ ଥର ପଢ଼ିବା ପରେ ଆଜି ମୋର ପତ୍ରିକାରେ ପ୍ରକାଶ କଲି।

ପାଠକମାନଙ୍କୁ ମୋର ଅନୁରୋଧ, ମତାମତ ସହ ଖଣ୍ଡେ ଚିଠି ମୋ ପାଖକୁ ଲେଖିବେ।

# ବୁନ୍ଦାବୁନ୍ଦା ଜୀବନ

**କ୍ଷୀରୋଦ ଦାସ**

ପଶ୍ଚିମାକାଶରେ ଖଣ୍ଡ ଖଣ୍ଡ ବହଳ ମେଘର ନେପଥ୍ୟରେ ବୟସ୍କ ସୂର୍ଯ୍ୟ ଅନେକ ବେଳୁ ଲୁଚି ଗଲେଣି । ଅନ୍ୟ ଦିନମାନଙ୍କ ପରି ବାଲିକୁଦ ସେପଟେ ପଠା ଭିତରର ମଶାଣି ଭିତରୁ ଶୁଭୁଥିଲା କେତୋଟି କୁକୁର ଏବଂ ବିଲୁଆଙ୍କର ମିଳିତ ସ୍ୱର । ଝାଉଁ ଗଛର ମଥାନ ଉପରେ ବିଜୁଳି ରହିରହି ଲୁଚକାଳି ଖେଳୁଥିଲା ଶିଶୁର ଆଖି ପରି ନିଷ୍ପାପ ତଥା ନିରିମାଖି ଆକାଶ ସାଥିରେ । ଝିପି ଝିପି ବର୍ଷା ସାଙ୍ଗକୁ ପ୍ରଚୁର ହେମାଳ ପବନ ହେତୁ ଚାରିଆଡ଼ ଶୁନ୍‌ଶାନ୍ ହୋଇ ଆସୁଥିଲା ରାତି ସାଢ଼େଆଠ କି ନ'ଟା ଭିତରେ । ତମାମ୍ ପଠାଟା ନିଶବ୍ଦ ଓ ନିର୍ଜନ ରାତି ଭିତରେ ସତେ ଅବା ଘୁମେଇ ପଡ଼ିଥିଲା ଭୟରେ ! ପାଣିପାଗର ଏ ପ୍ରକାର ପରିସ୍ଥିତିରେ ନଈ ପଠାରେ ଅଧିକ ସମୟ ବସି ନପାରି ଆମେ ସବୁ ଫେରି ଆସୁଥିଲୁ ଘରକୁ ।

ରାମ ନାମ ସତ୍ୟ ହେ... ।

ପେଟ୍ରୋମାକ୍ସ ଲାଇଟ୍‌ରେ ଦେଖା ଯାଉଥିଲା ଦଳେ ମଣିଷ କାନ୍ଧେଇ ଥିଲେ ଗୋଟିଏ ଶବ ଏବଂ ଚାଲିଗଲେ ପଠା ସେପଟ ମଶାଣି ଅଭିମୁଖେ । ମେଘ ଅନ୍ଧାର ରାତି ସାଙ୍ଗକୁ ପ୍ରଚୁର ନିର୍ଜନତା, ଝିପିଝିପି ବର୍ଷା ସାଙ୍ଗକୁ ବିଜୁଳି ଓ ଘଡ଼ଘଡ଼ି, ଏସବୁ ମିଶି ଗୋଟାଏ ଭୟ ଉଦ୍ରେକକାରୀ ପରିବେଶ ସୃଷ୍ଟି କରିଥିଲେ ।

"କିରେ, ଏଇଟା କୋଉ ସାହିର ଶବ କିରେ ?" ଗଣେଷକୁ ମୁଁ ପଚାରିଲି । ଗଣେଷ କହିଲା- "ବଡ଼େଇ ସାହିର ସେଇ ଯୋଉ ପରିବା ବେପାରିଟା ଏକ ନମ୍ବର ହାଟରେ ଷ୍ଟିଲ୍ ଦୋକାନ ବାଁ ପାଖରେ ବସେ, କ'ଣ ତା' ନାଁ... ହଁ, ଫକୀରା, ତା' ପୁଅ ପରା ମରିଗଲା ଆଜି ।"

"କ'ଣ କହିଲୁ !" ଗୋଟେ ପ୍ରଚଣ୍ଡ ଆଘାତରେ ମୋ ଛାତି ଭିତରଟା ମନ୍ଥି ହୋଇଗଲା । କେଇଟି ମୁହୂର୍ତ୍ତ ପାଇଁ ମୋ ଭିତରେ ସବୁକିଛି ଦୋହଲି ଉଠିଲା । ଭୁଲ୍ କଥାଟାଏ ଶୁଣି ପକାଇଲା ପରି ଆଉ ଥରେ ଗଣେଶ ଆଡ଼କୁ ଚାହିଁ ପଚାରିଲି- 'କ'ଣ କହିଲୁ ? ଫକୀରା ପୁଅ ମରିଗଲା !"

"ହଁ ।" ଗଣେଷ କହିଲା- 'ବିଚରା ଫକୀରାଟା ଅନେକ କଷ୍ଟ କରିଥିଲା ପୁଅ ପାଇଁ !'

ଗଣେଷର ଏ ଅପ୍ରତ୍ୟାଶିତ ଘୋଷଣା ମତେ ପ୍ରଚୁର ଯନ୍ତ୍ରଣା ଦେଲା । ଆଖି ଆଗରେ ଭାସି ଉଠିଲା ଫକୀରାର ସରଳ ମୁହଁଟି । କଳା ହୋଇ ବାଙ୍ଗରା ମଣିଷଟି । ଏକନମ୍ବର ହାଟର ସ୍କୁଟର ଷ୍ଟାଣ୍ଡ ପାଖ ଷ୍ଟିଲ୍ ଦୋକାନର ଠିକ୍ ବାଁ ପାଖରେ ଅବସ୍ଥିତ ପରିବା ମାର୍କେଟ୍‌ର ଗୋଟାଏ କଣକୁ ଲାଗି ତାଳପତ୍ର ଘେରା ଚାଳିଆଟିଏ । ତା'ରି ଭିତରେ ଫକୀରା ବସେ ପନ୍ଦର କୋଡ଼ିଏ କିଲୋ ଆଳୁ, ବାଇଗଣ, କଳରା, ବିଲାତି, ପିଆଜ, ଆଉ ରସୁଣ ଆଦି ପରିବା ଗହଣରେ ।

ଭାରି ହସହସ ଆଉ ମେଳାପୀ ଲୋକଟା । ତା' ମୁହଁକୁ ଦେଖିଲେ ଯେ କେହି ଧାରଣା କରିବ ଯେ ଲୋକଟା ନିଜକୁ ଆଉ ତା' ବେପାରକୁ ନେଇ ଖୁବ୍ ସନ୍ତୁଷ୍ଟ । ଜୀବନ

ବିରୋଧରେ ଯେପିର ତା'ର ଫୁଷ୍କାଏ ବି ଅଭିଯୋଗ ନାଇଁ । ଗରାଖମାନଙ୍କ ସହିତ ସେ ଯେପରି କଥା ହୁଏ, ଲାଗିବ ଯେପରି କୋଉ ଆତ୍ମୀୟଙ୍କ ସହିତ ନିବିଡ଼ ଅନ୍ତରଙ୍ଗତାରେ ସେ ମଜ୍ଜି ଯାଇଛି । ଲୋକଟାର ବ୍ୟବହାରରେ କି ଆନ୍ତରିକତା ଭରି ରହିଥାଏ କେଜାଣି, ପ୍ରାୟ ସବୁବେଳେ ମୁଁ ତା'ର ଦୋକାନରୁ ପରିବା କିଣେ । ପରିବା ନୁହେଁ, ତା'ର ମଧୁର ବ୍ୟକ୍ତିତ୍ୱ ହିଁ ମତେ ଆକର୍ଷିତ କରେ ।

ଗୋଟାଏ ଯନ୍ତ୍ର ପରି ଫକୀରା ଗପେ ଅହରହ । ତା' କଥାରେ ନଥାଏ ଏତେ ଟିକିଏ ଆବିଳତା କିମ୍ବା ସ୍ପର୍ଦ୍ଧିତ ଅହଂକାର । ବେଶ୍ ମୁଗ୍ଧ ପ୍ରଶାନ୍ତିରେ ସ୍ୱଚ୍ଛ ଓ ପରିଚ୍ଛନ୍ନ ତା'ର କଥା । ଯୁବକ ବେଳର ଅବିସ୍ମରଣୀୟ ରଂଗୀନ ତଥା ମଧୁର ସ୍ମୃତିଠାରୁ ଆରମ୍ଭ କରି ବର୍ତ୍ତମାନର ନିରାଟ ବାସ୍ତବତା ପର୍ଯ୍ୟନ୍ତ ସେ ଗପି ଚାଲେ ମୋ ସହିତ । କେତେବେଳେ କେମିତି ଗରାଖ ଜଣେ ଆସିଗଲେ ସେ ଟିକେ ତୁନି ପଡ଼ିଯାଇ ଆଳୁ କିଲେ କି ପିଆଜ ଅଧା କିଲେ ତା' ବ୍ୟାଗ୍ ଭିତରକୁ ବଢ଼ାଇ ଦିଏ । ପଇସା ନ ଗଣି ବ୍ୟାଗ୍ ଭିତରକୁ ପକାଇ ଦେବାବେଳେ ମୁଁ ଆପତ୍ତି କରେ– "ପଇସା ଗଣି ରଖ୍ ଫକୀରା । ଏମିତି ଆଖିବୁଜି ବେପାର କରାଯାଏନା ।"

ଅମାୟିକ ହସଟେ ଉତୁରି ପଡ଼େ ତା' ମୁହଁରୁ । "ବୁଝିଲେ ସା'ରେ, ବିଶ୍ୱାସଟା ହେଲା ଏ ସଂସାରରେ ବଡ଼ ଜିନିଷ । ବିଶ୍ୱାସ ନଥିଲେ ସବୁ ସତ ମିଛ ହୋଇଯାଏ, ସବୁ ମିଛ ସତ ହୋଇଯାଏ । ତାକୁ ତ ମୁଁ ଠିକ୍ ଠିକ୍ ଓଜନ କରିଦେଲି. ସେ କାହିଁକି ମତେ ଭୁଲ୍ ହିସାବ କରି ପଇସା ଦେବ ? ଆଁ ।

ହନୁହାଡ଼ ବାହାରି ପଡ଼ିଥିବା, ଏ ସଂସାରକୁ ଗୋଟେ ଆମୋଦପ୍ରଦ ସରଳ ସ୍ଥାନ ବୋଲି ବିଚାରୁଥିବୁ ଫକୀରାର ଅଭାବକ୍ଲିଷ୍ଟ ଝାଲୁଆ ମୁହଁକୁ ଚାହିଁ ମୋର କହିଦେବାକୁ ଇଚ୍ଛା ହୁଏ– 'ତୋ ଦୃଷ୍ଟିକୋଣକୁ ସମ୍ମାନ ଦେବା ପରି ମଣିଷମାନଙ୍କର ଘୋର ଅଭାବ ଏ ପୃଥିବୀରେ। ତେଣୁ ବାବୁ ଫକୀରା, ବିଶ୍ୱାସରେ ନୁହେଁ, ଅବିଶ୍ୱାସ କରି ଏ ଜୀବନ ବଂଚି ଶିଖ୍ ।"

ପ୍ରକାଶ୍ୟରେ କୁହେ– "ପାଣି ପିଇବ ଛାଣି... । ତୋ ଭବିଷ୍ୟତ କଥା ଚିନ୍ତା କର୍ । ବେପାରରେ ଏମିତି ଫୁଲାଫାଙ୍କିଆ ହେଲେ ଚଳିବ !"

"ବୁଝିଲ ବାବୁ !' ଫକୀରା ଆହୁରି ଦାର୍ଶନିକ ପାଲଟିଯାଏ– 'ଆଜି ମଲେ କାଲି ଦି'ଦିନ । ଏ ଜୀବନଟା ତୁଚ୍ଛା ମାଟି ହାଣ୍ଡିଟେ । ପଡ଼ିଗଲେ ଢ଼ୋ । ସେଥିରେ କାଲିର ଚିନ୍ତା କ'ଣ ପାଇଁ । ଆଜି ବଂଚିଛି, ବାସ୍ ସେତିକି ଯଥେଷ୍ଟ । କାଲିକୁ ବଂଚିଥିଲେ ଦେଖାଯିବ ।"

ଅଧିକ ରାତି ହୋଇଗଲାଣି ଦେଖି ମୁଁ ଫେରି ଆସେ । ମୂର୍ଖ ଲୋକଟାର ତାତ୍ତ୍ୱିକ କଥା କେଇ ପଦ ମନ ଭିତରେ ଭେଦିଯାଏ । ଘରେ ସ୍ତ୍ରୀ ଗରଗର ହୋଇ କୁହେ "ସଂଧ୍ୟାବେଳରୁ ଗଲଣି ଯେ ଆସି ବାଜିଲାଣି ରାତି ନ' । କୁଆଡ଼େ କୁଆଡ଼େ ବୁଲି ବାବୁ ଫେରୁଛନ୍ତି ଏତବେଳକୁ । ରୋଷେଇ ହେବ କେତେବେଳେ ? କୁଆଡ଼େ ଥିଲ ଏତେ ବେଳଯାଏ, ଶୁଣେ ।"

ମୁଁ କହିପାରେନା, ଜଣେ ଭଲ ମଣିଷ ହାବୁଡ଼ରେ ପଡ଼ିଯାଇଛି ଯେ ଜମା ମୁକୁଳି ପାରୁନି । କହିପାରେନା, ସବୁଦିନେ ସଂଧ୍ୟାବେଳେ ଟିକେ ତା' ଆଡୁ ବୁଲି ନ ଆସିଲେ ଜମା ଭଲ ଲାଗେନି ।

କେବଳ ମୋ ସହିତ ନୁହେଁ, ଅଧିକାଂଶ

ଗରାଖଙ୍କ ସହିତ ଫକୀରାର ଘନିଷ୍ଠତା ବଢ଼ିଯାଉଥିଲା ଦିନକୁ ଦିନ । ଅପରଛନିଆ ମୂର୍ଖ ଲୋକଟା ପ୍ରତି ସମସ୍ତଙ୍କ ମନରେ ସୃଷ୍ଟି ହୋଇଯାଉଥିଲା ଗୋଟେ ଅନନ୍ୟ ସ୍ନେହ । ତା'ଠାରୁ କିଛି ପାଇବା ଆଶାରେ ନୁହେଁ, ତା'ର ନିଷ୍କପଟ ମଧୁର ବ୍ୟବହାର ହିଁ ତାକୁ ଗରୀୟାନ୍ କରିପକାଉଥିଲା ସମସ୍ତଙ୍କ ପାଖରେ । ଏହା ବାଦ୍ ଫକୀରାର ଆଉ ଜଣେ ଘନିଷ୍ଠ ବଂଧୁ ଥିଲା । କାଳିଆ ଷଣ୍ଢଟିଏ । ସବୁଦିନ ଝୁଲିଝୁଲି ଆସି ଶୁଏ ତା' ଦୋକାନ କଡ଼ରେ । ଆଉ କୁଆଡ଼େ ଯାଏନି । ଆଳୁ, ବାଇଗଣ, କୋବି ଚୋପା ଆଦି ଖାଇ ସାରି ଶୋଇ ଶୋଇ ପାକୁଳି କରୁଥିବ ଏବଂ ଫକୀରା ଓ ଗରାଖମାନଙ୍କ କଥାକୁ କାନଡେରି ଶୁଣୁଥିବ । ରାତି ଅଧିକ ହେଲେ ଫକୀରା କୁହେ- "ଯା... ପଳା... କାଲି ଆସିବୁ ।" ଷଣ୍ଢ ଉଠିବନି । ଫକୀରା ଆଳୁଟାଏ ତା' ପାଟିରେ ଗୁଞ୍ଜି ଦେଉ ଦେଉ କୃତ୍ରିମ ରାଗରେ କହିବ- "ଆରେ... ଯା, ମୋର ପରା ବେଳ ହେଲାଣି..." ଷଣ୍ଢ ଉଠିବ । ଭିଡ଼ିମୋଡ଼ି ହେବ । ଦୁଇ ଚାରିପାଦ ଆଗେଇ ଯାଇ ବୁଲିପଡ଼ି ତା' ହମ୍ବା ରଡ଼ି ଜରିଆରେ ଫକୀରାକୁ ଶୁଭରାତ୍ରି ଜଣାଇ ଧୀରେ ଧୀରେ ଅପସରି ଯିବ । ତା' ପରଦିନ ନିର୍ଦ୍ଧାରିତ ସମୟକୁ ପୁଣି ହାଜର ।

ଫକୀରା ଆଉ ଷଣ୍ଢ ଭିତରେ ସେ ପ୍ରକାର ଆତ୍ମିକ ସଂପର୍କ ରୀତିମତ ଗୋଟେ ଚର୍ଚ୍ଚାର ବିଷୟ ସେ ଅଞ୍ଚଳରେ ।

ସାନପୁଅର ଅସୁସ୍ଥତା ଯୋଗୁ ସେଦିନ ଆଉ ହାଟକୁ ଯାଇପାରିଲି ନାହିଁ ମୁଁ । ଅସୁସ୍ଥତା ବୋଇଲେ ଲାଳ ଝାଡ଼ା । ଔଷଧ ଦେଇ ଦେଇ ଥକିଗଲାଣି ସ୍ତ୍ରୀ । ବ୍ୟସ୍ତ ହୋଇ ମୁଁ ଡାକ୍ତର ପାଖକୁ ଯାଇ ଔଷଧ ନେଇ ଘରେ ପହଞ୍ଚିବାର ଅଧଘଣ୍ଟା ପରେ ଫକୀରା ଆସି ହାଜର । ସାଙ୍ଗରେ କିଛି ପରିବା ଏବଂ ଗଛ ପାଚିଲା କିଛି ଆମ୍ବ । ପୁଅ କଥା ଶୁଣି ସେ ବ୍ୟସ୍ତ ହୋଇପଡ଼ିଲା ଏବଂ ଅଧ ଘଣ୍ଟାଏ ଭିତରେ ଆସୁଛି କହି ଚାଲିଗଲା । ପ୍ରାୟ ଘଣ୍ଟାକ ପରେ ଦୁଇଟା କଞ୍ଚା ଡାଳିମ୍ବ ଏବଂ କଞ୍ଚା ଲେମ୍ବୁ ଧରି ଆସି ପହଞ୍ଚିଲା ସେ । କହିଲା- "ଏଥିରୁ ଗୋଟାଏ ବାଟି ପୁଅକୁ ପିଆଇ ଦିଅ, ମା' । ସବୁ ଠିକ୍ ହୋଇଯିବ ।"

କହିବା ବାହୁଲ୍ୟ ସେ ଦେଇଥିବା ଡାଳିମ୍ବ ରସରେ ହିଁ ପୁଅର ଝାଡ଼ା ବନ୍ଦ ହୋଇଗଲା । ଫକୀରା ପ୍ରତି ମୋର ଅନୁରାଗ ବହୁ ଗୁଣରେ ବୃଦ୍ଧି ପାଇଗଲା ଖାସ୍ ଏଇ କାରଣ ଯୋଗୁଁ ।

ସେଦିନ ଫକୀରାକୁ ଦେଖି ମୁଁ ବିସ୍ମିତ ହୋଇଗଲି । ତା ମୁହଁଟା ଦେଖା ଯାଉଥିଲା ଥମ୍ ଥମ୍ । ଆଶଙ୍କା ତଥା ଦୁଃଖର ଓଜନରେ ସେ ବିଚଳିତ ହୋଇପଡୁଥିଲା । ପଚାରିଲି- "କ'ଣ ହେଲା ଫକୀରା ? ଦେହ ଭଲ ନାହିଁ କି ?"

"ମନଟା ଭଲ ନାହିଁ ବାବୁ ।" ଫକୀରା କହିଲା- "ଟୋକାଟା ଦେହ ଖରାପ୍ ।" ନିଜ ପୁଅକୁ ଫକୀରା ଟୋକା ବୋଲି ହିଁ କୁହେ ।

"କ'ଣ ହୋଇଛି ତା'ର ? ମୁଁ ପଚାରିଲି ।

"କେଜାଣି ।" ଫକୀରା ଭିତରେ କରୁଣତାର ଝଡ଼ଟିଏ ସୃଷ୍ଟି ହେଲା ସତେ ଯେପରି । ଗୋଟାଏ ଦୟନୀୟ କଂପନ ତାକୁ ଅସ୍ଥିର କରିପକାଇଲା । ତା' ମୁହଁର ଆକୃତି ଦେଖାଗଲା ଭାରି କାନ୍ଦ କାନ୍ଦ । ନିଜ ଭିତରେ ଉତ୍ପାତ କରୁଥିବା ଯନ୍ତ୍ରଣାଦଗ୍ଧ କ୍ଷତଟାକୁ ଚପାଇବାକୁ ଉଦ୍ୟମ କରୁ କରୁ ବାଷ୍ପାକୁଳ କଣ୍ଠରେ କହିଲା- "ସାତ ଆଠ ଦିନ ହେଲାଣି ଜମା ଖାଉନି । ଯାହା ଟିକେ ପାଟିକୁ ନଉଚି

ବାନ୍ତି କରୁଛି । କହୁଛି ତଳି' ପେଟ ଭିତରଟା ଭାରି ବିନ୍ଧୁଛି । ମୁଣ୍ଡ ବୁଲାଉଛି । କାଲି ରାତିରୁ ପେଟ ପେଟ କହି ଖାଲି ଗଡୁଚି । ମୁଁ କ'ଣ କରିବି କିଛି ଭାବିପାରୁନି ; ବାବୁ !

"ତାକୁ ଡାକ୍ତର ଦେଖାଇଥିଲ ?" ପଚରିଲି ।

'ହଁ । ଛ ନମ୍ବର 'ମେଡିକାଲ୍ ନେଇଥିଲି । ଫଟୋ ଉଠାଇଛି । ଝାଡ଼ା, ରକ୍ତ ପରୀକ୍ଷା କରିବାକୁ ଦେଇଛି ।' ଫକୀରର ଏଇ କେଇ ପଦ କଥା ସୂଚେଇ ଦେଉଥିଲା ଯେ ସତେ ଯେପରି କ'ଣ ଗୋଟାଏ ତାକୁ ଭିତରେ ଭିତରେ ଖୁବ୍ ନିର୍ଯାତିତ କରୁଛି ଏବଂ ସେଇ ପୁଞ୍ଜିଭୂତ ନିର୍ଯାତନା ରୂପାନ୍ତରିତ ହୋଇଯାଉଛି ଗୋଟେ ଅନନ୍ତ କୋହରେ । ପରିଣାମ ସ୍ୱରୂପ ତା' ସଦା ହସହସ ପ୍ରସନ୍ନ ମୁହଁଟା ଧସକି ପଡୁଚି ଅଣାୟର ଦୁଃଖରେ ।

"ତୁ ଜମା ବ୍ୟସ୍ତ ହ'ନା ।" ଆଶ୍ୱାସନା ଦେଲି ଫକୀରାକୁ । ସବୁ ଠିକ୍ ହୋଇଯିବ । କ'ଣ ଟିକେ ପେଟ ଭିତରଟା ବିଗିଡ଼ ଯାଇଛି । ପାନେ ଔଷଧ କିମ୍ବା ଗୋଟିଏ ଇଂଜେକ୍‌ସନ୍‌ରେ କୁଆଡ଼େ ଛାଡ଼ି ପଳାଇବ ରୋଗ । ଦେଖିବୁ କାଲି ଛାଡ଼ି ପହରି ଦିନକୁ ତୋ ପୁଅ ସାଇକେଲ୍ ଚଢ଼ି କଲେଜ ଯିବ । କାଲି ତ ସୋମବାର, ହାଟ ବନ୍ଦ । ମଙ୍ଗଳବାର ଦିନ ମତେ ତା' ରିପୋର୍ଟ ସବୁ ଦେଖାଇବୁ ତ !

ପୁଅର ଆରୋଗ୍ୟ କାମନା ଜନିତ ଦୁଇପଦ କଥା ଶୁଣି ଫକୀରାର ମୁହଁ ମୋ ପ୍ରତି ନାହିଁ ନଥିବା ଗୋଟେ କୃତଜ୍ଞତାରେ ଭରି ଯାଉଥିଲା । କାନ୍ଧରେ ପକାଇଥିବା ଗାମୁଛାରେ ସେ ମୁହଁ ପୋଛିଲା ଏବଂ କହିଲା- "ହଉ ।"

"ହଉ ।" ଏଇ ପଦକ କଥା ହିଁ ଥିଲା ଫକୀରାର ମୋ ପାଇଁ ଶେଷ ଶବ୍ଦ । ସେଇ ଦିନଠାରୁ ଆଉ ସେ ହାଟକୁ ଆସିନାଇଁ । ତା' ବସିବା ସ୍ଥାନରେ ସେ କାଳିଆ ଷଣ୍ଢଟି ଆସି ଶୋଇଥିଲା ଏବଂ ବୋଧେ ମନେ ମନେ ଖୁବ୍ ଖୋଜୁଥିଲା ତା' ଅନ୍ନଦାତାକୁ । ଫକୀରା କାହିଁକି ହାଟକୁ ଆସୁନାହିଁ, ଏକଥା ବୁଝିବାକୁ ଦୁଇ ତିନି ଥର ବାହାରିଥିଲି ତା' ଘରୁ ଘେରାଏ ବୁଲିଆସିବି ବୋଲି । ହେଲେ କ'ଣ ପାଇଁ କେଜାଣି ଯାଇପାରି ନଥିଲି । ଆଠ ଦଶଦିନ ପରେ ଶୁଣିଲି ତା' ପୁଅର କିଡ୍‌ନୀ ନଷ୍ଟ ହୋଇଯାଇଛି । ସାରା ଜୀବନର ମେହନତିରେ ଅତି କଷ୍ଟରେ ତିଆରି କରିଥିବା ତିନି ବଖୁରିଆ କୋଠା ଘରଟିକୁ ସେ ଘରେ ଭଡ଼ାରେ ରହୁଥିବା ଏଲ୍.ଆଇ.ସି. ବାବୁ ଜଣକୁ ବିକି ଦେଇ ଟଙ୍କା ଧରି ପୁଅକୁ ନେଇ ପଳାଇଛି ବମ୍ବେ ।

ବମ୍ବେ ହସ୍‌ପିଟାଲକୁ ଯିବା ପୂର୍ବରୁ ତାକୁ ଟିକେ ଦେଖା କରି ନ ପାରିବାର ଚିନ୍ତାଟେ ମତେ ଦଂଶନ କରୁଥିଲା ବାରମ୍ବାର । ହେଲେ ଆଜି ଦେଖିଲା ବେଳକୁ ଫକୀରାର ଜବାନ୍ ପୁଅଟା କୋକେଇରେ ବନ୍ଧା ହୋଇ ବୁହା ହେଉଛି ମଶାଣି ଅଭିମୁଖେ । ବୁଝି ଖବର ନେଲି ଯେ ବମ୍ବେରୁ ଡାକ୍ତରମାନେ ରୋଗୀକୁ ଫେରାଇ ଦେଲେ ଆଉ ଜୀବନର ଆଶା ନାହିଁ ବୋଲି । ଦଶବାର ଦିନ ପୂର୍ବେ ଫକୀରା ଆପାତତଃ ସଂଜ୍ଞାହୀନ ପୁଅକୁ ଧରି ପଳେଇ ଆସିଥିଲା ଭୁବନେଶ୍ୱର । ହେଲେ ଆଜି ସବୁକିଛି ଶେଷ । ଏ ଦୁର୍ଦ୍ଦିନବେଳେ ତା' ପାଖକୁ ଟିକେ ଠିଆ ହୋଇପାରିଲିନି । ମନ ଭିତରଟା ଗୋଟେ ଅବଶୋଷ ବୋଧରେ ଝଡ଼ସଡ଼ ହୋଇଯାଇ ମତେ ଦୋଷୀ ଦୋଷୀ କରି ପକାଉଥିଲା ।

ପରିସ୍ଥିତିର ସାମ୍ନାରେ ମଣିଷ ତୁଚ୍ଛା ଖେଳନା । ତା' ଆଗରେ ମଣିଷର ଯାବତୀୟ

ବିଦ୍ୟାବୁଦ୍ଧି, ସବୁ ଚାଲାଖି, ସମସ୍ତ ପାରିବା ପଣ ଲୋପ ପାଇଯାଏ । ସେ ଆଦୌ ବୁଝିପାରେନା ସମୟ ତା' ପାଇଁ ତିଆରି କରୁଥିବା ଭବିଷ୍ୟତ ନକ୍ସାର ରୂପରେଖ । ପ୍ରଚୁର ଅର୍ଥ ତଥା ସମ୍ମାନର ଅଧିକାରୀ କୁହାଯାଉଥିବା ମଣିଷଟି ଯେ ସ୍ୱାସ୍ଥ୍ୟ ସଂପର୍କୀୟ ବଳିଷ୍ଠ ପ୍ରତିରକ୍ଷାର ଅଧିକାରୀ ହୋଇଥିବ, ଏକଥା ଆଦୌ କୁହାଯାଇପାରେନା । କାଲି ସକାଳୁ ଫକୀରା ଘରକୁ ଯାଇ ତାକୁ ଟିକେ ଦେଖିଆସିବାର ନିଷ୍ପତ୍ତି ନେବାବେଳକୁ ଠିକ୍ ସେଇଦିନ ରାତିରେ ଆରମ୍ଭ ହେଲା ମୋ ପେଟରେ ପ୍ରବଳ ଯନ୍ତ୍ରଣା । ରାତାରାତି ହସ୍‌ପିଟାଲ୍‌ରେ ଭର୍ତ୍ତି ହେବାକୁ ପଡ଼ିଲା । ପ୍ରଥମେ ବ୍ଲଡ୍, ଇଉରିନ୍ ଏବଂ ଷ୍ଟୁଲ୍ ଟେଷ୍ଟ ପରେ ଯେତେବେଳେ ଏକ୍‌ସ୍-ରେ କରାଗଲା, ଜଣାପଡ଼ିଲା ଆପେଣ୍ଡିସାଇଟିସ୍ । ଅପରେସନ ମଷ୍ଟ୍ । ହସ୍‌ପିଟାଲର ଅସହ୍ୟ ପରିବେଶ ଭିତରୁ ମୁକୁଳିବାକୁ ଲାଗିଗଲା ପାଖାପାଖି ମାସେ । ପ୍ରଚୁର ଦୁର୍ବଳତା ହେତୁ ଡାକ୍ତରଙ୍କ ପରାମର୍ଶ ଅନୁଯାୟୀ ଅଗତ୍ୟା କେବଳ ଶୋଇ ରହିବାକୁ ହେଲା ମତେ । ଏତେ ଅସୁବିଧା ଭିତରେ ବି ଫକୀରାର ଦୁଃଖ ବିଜଡ଼ିତ ମୁହଁଟି ବେଳେବେଳେ ଉଭା ହେଉଥିଲା ମୋ ସାମ୍‌ନାରେ ।

ପ୍ରାୟ ତିନିମାସ ପରେ ଦିନେ ମୋ ସ୍କୁଟର ଅଟକିଲା ଯାଇ ଫକୀରାର ଦୁଇ ବଖୁରିଆ ଘର ସାମ୍‌ନାରେ। ଫକୀରାର ଏ ଦୁର୍ଦ୍ଦିନରେ କେମିତି ମୁଁ ତାକୁ ସାମ୍‌ନା କରିବି, ସେଇକଥା ଭାବୁ ଭାବୁ କଲିଂବେଲ୍ ସୁଇଚ୍‌ରେ ହାତ ଦେଲି। କବାଟ ଖୋଲି ଉଭା ହେଲେ ଜଣେ ସୁନ୍ଦରୀ ମହିଳା। ଫକୀରା ବିଷୟରେ ପଚାରିବାରୁ ଆଗରୁ ଯେପରି ମୁଖସ୍ଥ କରିବା ପରି ଆରମ୍ଭ କଲେ- "ଘରଟାକୁ ତ ଆମକୁ ଆଗରୁ ବିକି ଦେଇଥିଲା। ପୁଅ ମଲା ପରେ ଦୟା ଦେଖାଇ ତାକୁ ପାଖରେ ରଖିଲୁ। ପୂରା ପାଗଳ ହୋଇ ଗଲା। କଂସା ତାଟିଆ ଫୋପାଡ଼-ଫିଙ୍ଗା କଲା। ଘରଦ୍ୱାର ଅସନା କଲା।" ସ୍ତ୍ରୀ ଲୋକଟି ଟିକେ ଚୁପ୍ ରହି ପୁଣି ଯୋଗ କଲା- "ଏଇ ପନ୍ଦର ଦିନ ହେବ କୁଆଡେ ଯେ ଗଲା, ବାବୁ ତାକୁ ଖୋଜି ଖୋଜି ନୟାନ୍ତ ହେଲିଣି। କୁଆଡ଼େ ଗଲା କେଜାଣି!" ସ୍ତ୍ରୀ ଲୋକଟି ଏତକ କହିଲା ଏବଂ ଜଣେ ଅପରିଚିତ ମଣିଷ ସାମ୍‌ନାରେ ଏସବୁ ଗପୁଡ଼ି ବୋଲି ମନେ ମନେ ଅପ୍ରସ୍ତୁତ ହୋଇଯାଇ ଧଡ଼ାସ୍ କରି କବାଟ ବନ୍ଦ କରିଦେଲା।

ବିଷଣ୍ଣ ମନରେ ଘରକୁ ଫେରି ଆସିଲି । କିଛି ଭଲ ଲାଗିଲାନି। ମୋ ଭିତରେ ଭିତରେ କ'ଣ ଗୋଟାଏ ଯେପରି ଚୂର୍‌ମାର୍ ହୋଇଯାଉଥିଲା। ସଂଧ୍ୟାବେଳେ ଏକନମ୍ବର ହାଟକୁ ବାହାରିଲି। ଫକୀରାର ନିର୍ଦ୍ଧାରିତ ସ୍ଥାନଟା ଶୂନ୍ୟ ପଡ଼ିଥିଲା ଏବଂ ସେଠି ତା' ଆପଣାର କାଳିଆ ଷଣ୍ଢଟି ଶୋଇ ଶୋଇ ଅପେକ୍ଷା କରୁଥିଲା ମୁନିବଙ୍କୁ। ପାକୁଳି କରୁ କରୁ ବୋଧେ ହାତଛଡା ହୋଇଯାଇଥିବା ଅତୀତକୁ ରୋମନ୍ଥନ କରୁଥିଲା। ବେଳେବେଳେ ଷଣ୍ଢଟି କାନ ଦୁଇଟାକୁ ଟେକିଦେଇ କାହାକୁ ଗୋଟେ ଖୋଜିଲା ପରି ହେଉଥିଲା। ଲାଗୁଥିଲା, ଗୋଟେ ହଜିଲା ପ୍ରତିଧ୍ୱନି ଜୀବନ୍ତ ହୋଇଉଠି ସହସା ମିଳାଇଯାଉଛି ତା' ସାମନାରୁ। ତା ମୋହମୁକ୍ତ ନିର୍ଲିପ୍ତ ମୁହଁକୁ ନିରିଖେଇ ଲକ୍ଷ୍ୟ କଲେ ଯେ କେହି ଜାଣିବ, ଷଣ୍ଢଟି ବୋଧେ କାନ୍ଦୁଚି! ସେ କାନ୍ଦରେ କୌଣସି ଶବ୍ଦ ନଥିଲା, ହେଲେ କେତେ ଭାଷାମୟ, କେତେ କରୁଣ, କେତେ ଗରୀୟାନ୍ ନଥିଲା ସେ କାନ୍ଦ ସତେ!

ଓଭରବ୍ରିଜ୍ ଉପରେ ସେଦିନ ଥୋଡେ ଲୋକ ଜମିଥିଲେ କ'ଣ ଗୋଟାଏ ଦେଖିବା ପାଇଁ। ସମ୍ବାଦ ଅପେକ୍ଷା ବିସମ୍ବାଦରେ ହିଁ ମନୁଷ୍ୟର ଆଗ୍ରହ ପ୍ରଚୁର। ସେଠି ସ୍କୁଟର ଅଟକାଇ ପଚାରିବାରୁ ପାଖରେ ଠିଆ ହୋଇଥିବା ସାଇକେଲ୍ ଚଢ଼ା ବାବୁଜଣକ ଅନ୍ୟମନସ୍କ ଭାବରେ କହିଲେ, "ପାଗଳଟାଏ ଟ୍ରେନ୍‌ରେ କଟିଯାଇଛି ଭୋରୁ ଭୋରୁ।"

ମୋ ଅବଶ ହୋଇ ଆସୁଥିବା ଗୋଡ଼ ଦୁଇଟା ଆପେ ଆପେ ଘୋଷାଡ଼ି ହୋଇଗଲା ସେ ଆଡକୁ। ଏବଂ ସେଠି ଦାରୁଣ ଦୃଶ୍ୟଟିଏ ସତେ ଯେପରି ଅପେକ୍ଷା କରି ରହିଥିଲା ମତେ। ମୁଣ୍ଡଗଣ୍ଡି ଅଲଗା ହୋଇଯାଇଥିବା ଯେଉଁ ବିଭତ୍ସ ଲୋକଟିକୁ ମୁଁ ଦେଖିଲି, ସେ ଥିଲା ଫକୀରା। ହଁ ଫକୀରା। ମୋ ଚାଳିଶ ବର୍ଷର ଶରୀର ହଠାତ୍ ସଂକୁଚିତ ହୋଇଗଲା ଅଭାବିତ ଦୁର୍ଘଟଣାଟି ଦେଖି। ପାହାନ୍ତା ପ୍ରହରର ଅନ୍ଧାର ଭଳି ମୋର ସବୁ ନିଷ୍ଠା, ବିଶ୍ୱାସ, ଦମ୍ଭ ଏକାବେଳକେ ଭୁଷୁଡ଼ି ପଡ଼ିଲା। ସମାପ୍ତିରେ ମୋ ଭିତରଟା ଛିନ୍‌ଛତ୍ର ହୋଇଗଲା ପରି ଲାଗିଲା। ଶୁଭିଲା ପୋଲିସ୍ ସବ୍-ଇନିସ୍‌ପେକ୍ଟରଙ୍କ କର୍କଶ ସ୍ୱର- "ଲାୱାରିସ୍ ବଡ଼ି। ଏଟା ପାଗଳଟା। ପୋଷ୍ଟମର୍ଟମ ପାଇଁ ଲାସ୍‌କୁ ଉଠାଅ ଟ୍ରଲି ଉପରକୁ।"

ଦେହ ଭିତରେ କରେଣ୍ଟଟାଏ ଚାର୍ଜ ହୋଇଗଲା। 'ଲାୱାରିସ୍ ବଡ଼ି! ଏକଦା ପୃଥିବୀ ତଥା ମଣିଷମାନଙ୍କୁ ଏତେ ଶ୍ରଦ୍ଧାର ସହିତ ଗ୍ରହଣ କରିଥିବା ମଣିଷଟାର ଲାସ୍ କ'ଣ କେବେ ଲାୱାରିସ୍ ହୋଇପାରେ! ଗୋଟେ ଅସ୍ୱାଭାବିକ ବେଦନାକ୍ଲିଷ୍ଟ ନୀରବତା ଭିତରେ ମୋ ଅସ୍ତିତ୍ୱ ଫେଣ୍ଟି ହୋଇଯିବା ପରି ଲାଗିଲା। ଫକୀରାର ଡେଡ୍‌ବଡ଼ିକୁ ତାର ଆତ୍ମୀୟ କହି ଗ୍ରହଣ କରିବି ନା କିଛି ନ ଦେଖିଲା ପରି ମୁହଁ ଛପାଇ ଭିଡ଼ ଭିତରେ କୁଆଡ଼େ ଲୁଚିଯିବି! ମିଳାଇଯିବି! ମୋ ଭିତରେ ମୁଁ ପଛଘୁଞ୍ଚା ଦେବାକୁ ଆରମ୍ଭ କଲାବେଳେ ସେ କାଳିଆ ଷଣ୍ଢଟି କୁଆଡେ ଥିଲା କେଜାଣି ଭୟଙ୍କର ଗର୍ଜନ କରି ତତ୍‌କ୍ଷଣାତ୍ ଉଭା ହେଲା ସେଠି। ପୋଲିସ୍‌ର ଲାଠିମାଡ଼କୁ ବେଖାତିର କରି ସେ ସ୍ତମ୍ଭିତ ଠାଣୀରେ ଠିଆ ହୋଇ ରହିଲା ଫକୀରାର ଲାସ୍ ପାଖରେ। ତା' ମୁହଁରୁ ବାହାରୁଥିବା ଅଣଚାଶ ପବନ ସୂଚେଇ ଦେଉଥିଲା ଯେ- "ନା, ନା, ଯେ ଲାୱାରିସ୍ ନୁହେଁ। ଯେ ମୋ ମୁନୀବ, ମୋ ଅନ୍ନଦାତା। ଯାଙ୍କ ଛିନ୍‌ଛତ୍ର ଶରୀରକୁ ଡାକ୍ତରଖାନାରେ ଆହୁରି ଖିନ୍‌ଭିନ୍ ହେବାକୁ ମୁଁ ଦେବି ନାହିଁ... ଯାଅ, ସମସ୍ତେ ପଳାଅ ଏଠୁ...।"

ପରିସ୍ଥିତି ଅଣାୟତ୍ତ ହେବାରୁ ପୋଲିସ୍‌କୁ ଦୁଇ ରାଉଣ୍ଡ ଗୁଳି ଚଳାଇବାକୁ ପଡ଼ିଥିଲା ଷଣ୍ଢଟିର ଗୋଡ଼କୁ ଲକ୍ଷ୍ୟ କରି। ବିକଟ ଯନ୍ତ୍ରଣାରେ ଆର୍ତ୍ତନାଦ କରି ଷଣ୍ଢଟି ସେଇଠି ପେଟେଇ ପଡୁଥିବା ବେଳେ ଫକୀରାର ଲାସ୍‌କୁ ଟ୍ରଲି ଉପରକୁ ଉଠାଇ ନେଉଥିଲେ କେତେ ଜଣ କନେଷ୍ଟବଳ।

ଏକ ନମ୍ବର ଘାଟରେ ଫକୀରାର ସେଇ ତାଳ-ବରଡା ଘେରା ଚାଳିଆଟା ଧୀରେ ଧୀରେ ଭୁଷୁଡ଼ିବାକୁ ଆରମ୍ଭ କଲା। ଅଭ୍ୟସ୍ତ ପୃଥିବୀଟା ତା' ପାଇଁ ଶେଷ ହୋଇଗଲା ଭାବି ଜଖମ ଶରୀରକୁ ନେଇ ସେ ଚାଳିଆ ଭିତରେ ଡହଳ ବିକଳ ହେଉଥିବା ଷଣ୍ଢଟି ମଧ୍ୟ ଆଉ ଉଠି ପାରିଲା ନାହିଁ। ଦିନେ ସକାଳୁ ଲୋକମାନେ ଦେଖିଲେ ସେ ସେଠି ନିଷ୍ପଲକ ଆଖି ଆଉ ନିସ୍ପନ୍ଦ ଦେହକୁ ଲମ୍ବାଇ ଦେଇ ଶୋଇଛି ଏବଂ ତା' ଚାରିଟା ଗୋଡ ଲାଠି ପରି ସିଧା ହୋଇଯାଇଛି।

କୋଉ ଜଣେ ସହୃଦୟ ମଣିଷ ମୁହଁରୁ ଅକସ୍ମାତ୍ ବାହାରି ଆସିଲା 'ଆହା...!' ⋊⋉

# ଶୀତଳ ଶିଖା

ରଞ୍ଜନ କୁମାର ସାହୁ

ଥରେ ଜଣେ ରାଜା ତାଙ୍କର ଜଣେ ବିଶ୍ୱସ୍ତ ଅମାତ୍ୟଙ୍କୁ ପଚାରିଲେ, "ପ୍ରସନ୍ନଜିତ କହିପାରିବ ଏ ସଂସାରରେ ପ୍ରତ୍ୟେକ ପୁରୁଷ କାମୁକ ନା ମୁଁ ଏକୁଟିଆ ?"

: "ବୁଝିପାରିଲିନି ରାଜନ ।" ବିନମ୍ରେ ବୃଦ୍ଧ ଅମାତ୍ୟ ପ୍ରକାଶ କଲେ ।

: "କାମୁକ, ଲମ୍ପଟ, ସ୍ୱୈଣ ଆଦି ଶବ୍ଦଗୁଡ଼ିକ ପ୍ରତି ତମର କିଛି ଧାରଣା ଅଛି ?

: "ଅଛି ମହାରାଜ ।"

: "ଏସବୁର ଅର୍ଥ କ'ଣ ବ୍ୟାଖ୍ୟା କର ।"

: ନିଜର ଅପରୂପା ପତ୍ନୀ ଥାଇବି ଯେଉଁ ପୁରୁଷ ଅନ୍ୟ ରମଣୀ ପ୍ରତି ଆସକ୍ତ ହୁଏ, ସେ ଏହି ଶ୍ରେଣୀଭୁକ୍ତ ଅଟେ । ସେ ସର୍ବଦା ଏକାଧିକ ନାରୀ ଭୋଗ କରିବା ପାଇଁ ଲାଳାୟିତ ହେଉଥାଏ ।

: ସେ ଦୃଷ୍ଟିରୁ ବିଚାର କଲେ ମୋର ମଧ ଚନ୍ଦ୍ରମାପରି ପାଟ ମହୀଷର ଅଛନ୍ତି । ସୌନ୍ଦର୍ଯ୍ୟରେ ତାଙ୍କୁ ବଳିଗଲା ପରି ମହିଳା ଏ ଭୂମଣ୍ଡଳରେ ନାହିଁ କହିଲେ ବାହୁଲ୍ୟ ହେବନାହିଁ । ତଥାପି ମୁଁ ଅନେକ ଯୁବତୀଙ୍କୁ ଅନ୍ତଃପୁରରେ ରଖିଛି । ସେମାନେ ଜଣେ ଜଣକୁ ବଳି ସୁନ୍ଦରୀ, ସୁଶ୍ରୀ, ସୁନୟନୀ । ପ୍ରତ୍ୟେକଙ୍କ ସାନ୍ନିଧରେ ମିଳେ ଅବିସ୍ମରଣୀୟ ମୋହାବିଷ୍ଟ କଳାପରି ମାଦକତା, ଅଫୁରନ୍ତ ଆହ୍ଲାଦ । ପାଟ ମହିଷୀ ଚନ୍ଦ୍ରାବତୀଙ୍କ ଉପସ୍ଥିତିରେ ଏକାଧିକ ରମଣୀଙ୍କର ଅନାବଶ୍ୟକତା ସତ୍ତ୍ୱେ ମୁଁ ସେମାନଙ୍କୁ ଭୋଗ୍ୟାଭାବେ ରଖିଅଛି । ଏଥିରୁ କ'ଣ ପ୍ରମାଣିତ ହେଉଛି ? ବେଳେ ବେଳେ ଭାବେ, ମୁଁ ଜଣେ ସମ୍ଭୋଗପ୍ରିୟ ବ୍ୟକ୍ତି ଦୁଶ୍ଚରିତ୍ର ରାଜା ।

: କଦାପି ନୁହେଁ ମହାଭାଗ । ଆପଣ ଏପରି କ'ଣ କହୁଛନ୍ତି । ଏହା ଯେ ପ୍ରତ୍ୟେକ ମହିପାଳଙ୍କ ଶୌର୍ଯ୍ୟଶାଳିତା, ପୁରୁଷତା । ସମସ୍ତ ରାଜା ଏକାଧିକ ରାଣୀ ରଖିଥାନ୍ତି । ଆଉ ଆପଣ ଅନ୍ୟାୟ କ'ଣ କରିଛନ୍ତି ଯେ ଏତେ ଅପରାଧବୋଧ କରୁଛନ୍ତି ? କଥାରେ ଅଛି ବୀରଭୋଗ୍ୟା ବସୁନ୍ଧରା ବୀର ଭୋଗ୍ୟା ରମଣୀ । ପ୍ରତ୍ୟୟ ଭରି ଅମାତ୍ୟ ବ୍ୟକ୍ତ କଲେ ।

: ସେଥିପାଇଁ ଯଦିଓ ଅତ୍ୟଧିକ ମ୍ରିୟମାଣ ନୁହେଁ, ମୋ ମନରେ ଅଳ୍ପଦିନ ହେବ ଗୋଟିଏ କଥା ବାରମ୍ବାର ଭ୍ରମରପରି ଦଂଶନ କରି ଆସୁଅଛି । ତାହାହେଲେ ଏତେ ସଂଖ୍ୟକ ସୁଶ୍ରୀ, ମୋହିନୀ, ମନବିନୋଦିନୀ ରୂପସୀ ଥିବା ପରେ ବି ମୁଁ କାହିଁକି ତୃଷାର୍ତ୍ତ ? ମୁଁ କାହିଁକି ଅଧିକ ସମ୍ଭୋଗକାମୀ କାହିଁକି ଏତେ ଅସଂପୂର୍ଣ୍ଣ ଓ ଦୁର୍ବଳ ? କାହିଁକି ନୂଆ ନୂଆ ଯୁବତୀଙ୍କ ପ୍ରତି ଆକୃଷ୍ଟ ? ମୋ ପ୍ରଶ୍ନର ଉତ୍ତର ଦେଇପାରିବ ପ୍ରସନ୍ନ । ଉତ୍କଣ୍ଠିତ ରାଜା ଜିଜ୍ଞାସା କଲେ ।

: ମହାରାଜ ! ଆପଣ ସାଗର ସମ ବିଶାଳ ଓ ମହାନ । ସାଗରରେ ଅକଳନ୍ତି ଜଳରାଶି ଥାଏ । ଜଳର ଅଭାବ ନାହିଁ ସେଠି । ତଥାପି ପ୍ରତ୍ୟହ ଶହ ଶହ ନଦୀ ଦ୍ୱାରା ପରିବାହିତ ଜଳକୁ ସିନ୍ଧୁ ପାନ କରିନିଏ । ଏତେ ପରିମାଣର ଜଳକୁ ଉଦରସ୍ଥ କରୁଥିଲେ ମଧ ସିନ୍ଧୁ କ'ଣ ତୃପ୍ତ ? ତଥାପି ତା' ମଧରେ ସନ୍ତୁଷ୍ଟ ଭାବ । ତୃଷାର ସୀମା ନଥାଏ । ତା' ଅସୀମ, ଅନନ୍ତ ।

: ମୋତେ ମହାରାଜା ରୂପେ ଦେଖନାହିଁ

ପ୍ରସନ୍ନଜିତ । ସାଧାରଣ ଗୋଟିଏ ଲୋକସ୍ତରକୁ ଆଣି ବିଚାର କର । ମୁଁ ଯେପରି କାମନାପ୍ରିୟ ଅନ୍ୟମାନେ ସେମିତି ନା ମୁଁ ଏକ ବ୍ୟତିକ୍ରମ ? ରାଜାଧିରାଜ ଅହଂକାରଶୂନ୍ୟ କଣ୍ଠରେ ବ୍ୟକ୍ତ କଲେ ।

: ମଣିଷ ଆଜନ୍ମରୁ ଲୋଭଗ୍ରସ୍ତ । ଅଧିକ ପାଇବାର ଲିପ୍ସା ତାକୁ ଅହରହ ଉନ୍ମାଦ ଓ ବିଚଳିତ କରେ । ଉକ୍ତ ପ୍ରବୃତ୍ତିଟା ବସ୍ତୁ ହୋଇପାରେ- ଅର୍ଥ ହୋଇପାରେ । ପ୍ରେମ ହୋଇପାରେ-କାମନାସକ୍ତି ହୋଇପାରେ । ସେହି ହିସାବରେ ସବୁପୁରୁଷ ଅଧିକରୁ ଅଧିକ ସୁନ୍ଦରୀ ତନ୍ୱୀକୁ ଉପଭୋଗ କରିବାକୁ ଚାହାଁନ୍ତି । ଏଣୁ ଆପଣ କେବଳ ନୁହଁନ୍ତି ରାଜନ, ଅନ୍ୟମାନେ ମଧ୍ୟ ଏପରି ପ୍ରକୃତି ପ୍ରେରିତ- ପରକୀୟା ପ୍ରୀତି ପାଇଁ ବ୍ୟାକୁଳ । ଥରେ ଜଣେ ଶ୍ରେଷ୍ଠୀଙ୍କ ଠାରୁ ଶୁଣିଥିଲି ସୁନ୍ଦର ବିବୃତିଟିଏ । ତାଙ୍କ ଅନୁସାରେ : "ଏକାଧିକ ସୁନ୍ଦରୀ କୋମଳାଙ୍ଗୀଙ୍କ ସହ ରାତିକ୍ରୀଡ଼ା ସକାଶେ, ପ୍ରତ୍ୟେକ ପୁରୁଷଙ୍କ ଅନ୍ତର୍ମନରେ ଥାଏ ପ୍ରଚୁର ଆସକ୍ତି ଓ ଅଭିଳାଷା । ଯେଉଁ ପୁରୁଷ ଗୋଟିଏ ନାରୀର ସଙ୍ଗ ସୁଖରେ ସନ୍ତୁଷ୍ଟ ବୋଲି ନିଜକୁ ପ୍ରଚାରିତ କରେ, ହୁଏତ ସେ ହୋଇପାରେ ନଂପୁଷକ କିମ୍ବା ଅକ୍ଷମ ଅଥବା ଜଣେ ମହାପୁରୁଷ । ବୃଦ୍ଧ ଅମାତ୍ୟ ଋଷିତୁଲ୍ୟ କଣ୍ଠରେ ସିଦ୍ଧାନ୍ତ ଶୁଣାଇଲେ ।

: ଆପଣଙ୍କ ସିଦ୍ଧାନ୍ତ କ'ଣ ପୂର୍ବରୁ ପ୍ରମାଣିତ ମନ୍ତ୍ରୀବର ?

: ନା ମହାଭାଗ । କିନ୍ତୁ ଅନୁମତି ଦେଲେ ପ୍ରମାଣ କରିବାକୁ ପ୍ରୟାସ କରିବ ଏ ଦାସ ।

: ମୁଁ ତ ସେହିଆ ଚାହେଁ ପ୍ରଥମରୁ ଏଭଳି ପରୀକ୍ଷା କଥା କହିଥିଲେ ତମେ ହୁଏତ ଉଦ୍ଭଟ କଳ୍ପନାଧାରେ ବିଚାର କରିଥାନ୍ତ । ତେଣୁ ପ୍ରଥମରୁ ମୋର ଇଚ୍ଛାକୁ ଅବତାରଣା ନକରି ଏତେଗୁଡ଼ିଏ ଗୌରଚନ୍ଦ୍ରିକା ଜରିଆରେ ଜଣେଇବାକୁ ପଡ଼ିଲା ।

ଅନୁମତି ପାଇ ପ୍ରସନ୍ନଜିତ ନଗରରେ ଏକ ଅଦ୍ଭୁତ ଘୋଷଣା ପ୍ରଚାର କରିଦେଲେ । ଡେଙ୍ଗୁରା ବାଦକ ପ୍ରତି ଜନପଦରେ ଆଦେଶ ପ୍ରସାରିତ କଲା ।

"ଏକ ବର୍ଷ ପାଇଁ ଏକ ଶହ ଦମ୍ପତିଙ୍କୁ ରାଜା ନିଜ ରାଜଧାନୀରେ ଅବସ୍ଥାନ କରିବା ସକାଶେ ସୁଯୋଗ ଦେବେ । ସେମାନେ ବିନା କାମ କାର୍ଯ୍ୟରେ ମାସିକ ବେତନ ପାଇ ସାନନ୍ଦରେ କାଳତିପାତ କରିବେ । ବର୍ଷ ଶେଷରେ ରାଜା ଯେଉଁ ଦମ୍ପତିଙ୍କୁ ଶ୍ରେଷ୍ଠ ବିବେଚନା କରିବେ, ସେମାନଙ୍କୁ ପୁରସ୍କାର ଦିଆଯିବ ।"

ଏଣୁ ଆସନ୍ତା କାଲିଠାରୁ ସବୁ ଦମ୍ପତି ଯେଉଁମାନଙ୍କର ଗୋଟିଏ ସନ୍ତାନ ଥିବ କିମ୍ବା ଆଦୌ ନଥିବ ସେମାନେ ମନ୍ତ୍ରୀ ପ୍ରସନ୍ନଜିତଙ୍କୁ ସାକ୍ଷାତ କରି ସୁଯୋଗଟିର ସଦୁପଯୋଗ କରନ୍ତୁ ।

ଘୋଷଣାପରେ ଅନେକ ପ୍ରାର୍ଥୀ ଆସିଲେ । ସେମାନଙ୍କୁ ଭିତରୁ ଯେଉଁମାନଙ୍କର ପତ୍ନୀ ସୁନ୍ଦର. ସୁଶ୍ରୀ, ରୁଚିଶୀଳା ସେହିମାନଙ୍କୁ କେବଳ ରହିବା ପାଇଁ ଅନୁମତି ମିଳିଲା । ଅନ୍ୟମାନେ ଫେରିଗଲେ ।

ଧାଡ଼ିକରି ଅସ୍ଥାୟୀ ଘର ଏକଶତ କରି ସେମାନଙ୍କୁ ରଖାଗଲା । ନବାଗତ ମାନଙ୍କର ଖାଦ୍ୟପେୟ, ସୁଖ ସ୍ୱାଚ୍ଛନ୍ଦ୍ୟ, ସେବା ଶୁଶ୍ରୂଷା, ମନୋରଞ୍ଜନ ପ୍ରଭୃତି କ୍ଷେତ୍ରରେ ସୁବନ୍ଦୋବସ୍ତ କରି ଦିଆଗଲା ।

ଏକମାସ ଅତିକ୍ରାନ୍ତ ହୁଅନ୍ତେ ମନ୍ତ୍ରୀ ପଚାଶରୁ ଉର୍ଦ୍ଧ୍ୱ ରାଜକର୍ମଚାରୀଙ୍କୁ ଆଣି ସେମାନଙ୍କ ବସତିଠାରୁ ଅଳ୍ପ ଦୂରରେ ରଖାଗଲେ । ପ୍ରତ୍ୟେକ ଅପରୂପାଙ୍କ ନିମିତ୍ତ ଅଲଗା ଅଲଗା କୋଠରିର ବ୍ୟବସ୍ଥା କରାଇ ଦେଇଥିଲେ । ନୃତ୍ୟଗୀତରେ ପଟୀୟସୀ ଲଳନାଗୋଷ୍ଠୀ କ୍ରମଶଃ ସମଗ୍ର ଅଞ୍ଚଳରେ ଆକର୍ଷଣର କେନ୍ଦ୍ରବିନ୍ଦୁ ହୋଇଗଲେ ।

କାଳକ୍ରମେ ଦେଖାଗଲା ଭିନ୍ନ ଭିନ୍ନ ଜନପଦରୁ ଆଗତ ପୁରୁଷମାନଙ୍କ ମଧ୍ୟରୁ କେହି କେହି ସେଠାକୁ ନିୟମିତ ଯିବାକୁ ଲାଗିଲେ । କେତେକ ଦିନରେ ଗଲେ ତ କେତେକ ଲୁଚି ଲୁଚି ନିଶାଚର ପରି ପହଁଚିଲେ । କେହି କେହି ସ୍ୱ ପତ୍ନୀମାନଙ୍କ ଦୃଷ୍ଟି ଅନ୍ତରାଳରେ ରହି ନର୍ତ୍ତକୀମାନଙ୍କୁ ନେଇ ଦୂରସ୍ଥାନରେ ରାତ୍ରୀଯାପନ କରି ଫେରିଲେ ।

ବର୍ଷକ ପରେ ରାଜା ଓ ଅମାତ୍ୟ ସମସ୍ତ ନର୍ତ୍ତକୀଙ୍କୁ ଡକାଇ ସେମାନଙ୍କର ବିବରଣୀ ଦେବାକୁ ଆଦେଶ କଲେ । କାରଣ ସେମାନଙ୍କ ମତାମତ ଓ ତଥ୍ୟକୁ ଭିତ୍ତିକରି ସଚ୍ଚୋଟ, କାମୁକହୀନ, ଆଦର୍ଶ ପତିମାନଙ୍କର ଚୟନ ହେବ । ଜଣେ ନର୍ତ୍ତକୀ କହିଲା, 'ମୋ ପାଖକୁ ପାଳି କରି ପାଞ୍ଚଜଣ ପୁରୁଷ ଆସୁଥିଲେ । ଆଉ ଜଣେ କହିଲା, "ମୁଁ ଭିନ୍ନ ଭିନ୍ନ ଲୋକଙ୍କୁ ଦୈନିକ ଭେଟେ । ସେମାନଙ୍କ ନାମ ମଧ୍ୟ କହିପାରିବି । ଅନ୍ୟ ଜଣେ ଜଣେଇଲା ଯେ ସେ ଅନେକଙ୍କ ସଙ୍ଗରେ ବାହାରକୁ ଯାଇ ରାତି କଟେଇଛି । ପ୍ରତ୍ୟେକ ନର୍ତ୍ତକୀଙ୍କର ବୟାନ୍‌କୁ ପର୍ଯ୍ୟାଲୋଚନା କରିବା ଉତ୍ତାରେ ଜଣାଗଲା ଯେ ପ୍ରାୟେ କେହି ସଚ୍ଚୋଟ, ଏକ ପତ୍ନୀବ୍ରତ ଧର୍ମ ପାଳନ କରିନାହାଁନ୍ତି । ଯୁବତୀମାନଙ୍କ ଠାରୁ ସେମାନଙ୍କ ପରିଚୟ ବୁଝାଯାଇ ଲକ୍ଷ୍ୟ କରାଗଲା ଯେ ଶହେ ଜଣରୁ ମାତ୍ର ତିନିଜଣ ଲୋକ କଦାପି ନର୍ତ୍ତକୀମାନଙ୍କ ଦ୍ୱାରସ୍ଥ ହୋଇନାହାଁନ୍ତି । ରାଜା ଖୁସି ହୋଇଗଲେ । ମନ୍ତ୍ରୀଙ୍କ ଜରିଆରେ ସେ ତିନିଙ୍କୁ ଡକାଇ ରାଜା କହିଲେ । "ପ୍ରସନ୍ନଜିତ୍ ତମ କଥା ଏବେ ମିଥ୍ୟା ପ୍ରମାଣିତ ହେଲା । ଦେଖ ଏଇ ତିନିଜଣ ହେଉଛନ୍ତି ଆଦର୍ଶ, ପବିତ୍ର ଓ ମର୍ଯ୍ୟାଦାବନ୍ତ । ମୋତେ ଖୁସି କରିବା ଉଦ୍ଦେଶ୍ୟରେ ତମେ ଯେଉଁ କଥା ପୂର୍ବରୁ କହୁଥିଲେ, ପ୍ରତ୍ୟେକ ପୁରୁଷ ପରକୀୟା ପ୍ରୀତି ବା ନିଷିଦ୍ଧ ପ୍ରେମ ପାଇଁ ବ୍ୟାକୁଳ, ତାହା ଅସିଦ୍ଧ ପ୍ରମାଣିତ ହେଲା । ସମସ୍ତେ ନହେଲେ ବି ଅଳ୍ପ କେତେଜଣ ନିଶ୍ଚିତ ରୂପେ କଳଙ୍କଶୂନ୍ୟ ।

ମନ୍ତ୍ରୀ ମଥାନତ କରିଦେଲେ । ରାଜା ସେହି ତିନିଜଣ ଜିତେନ୍ଦ୍ରିୟଙ୍କୁ ପୁରସ୍କୃତ କରିବା ପାଇଁ ଦିନ ଧାର୍ଯ୍ୟ କରିଦେଲେ ।

ପୁରସ୍କାର ଉତ୍ସବଦିନ ସମସ୍ତେ ଏକତ୍ରୀତ ହେଲେ । ମନ୍ତ୍ରୀ ସ୍ୱାଗତ ଭାଷଣରେ ଦମ୍ପତିମାନଙ୍କୁ କାହିଁକି ରାଜଧାନୀରେ ରଖାଯାଇଥିଲା । ତା ଉପରେ ବିଶଦ ବିବରଣୀ ପାଠକଲେ । ତତ୍‌ପରେ ପୁରସ୍କାର ପାଇଁ ଯୋଗ୍ୟ ବିବେଚିତ ତିନିଜଣଙ୍କ ନାମ ଘୋଷଣା କରାଗଲା । ପ୍ରତ୍ୟେକଙ୍କୁ ସହସ୍ର ଲେଖାଏଁ ସ୍ୱର୍ଣ୍ଣମୁଦ୍ରା ଓ ଉତ୍ତରୀୟ ଅର୍ପଣ ପାଇଁ ବ୍ୟବସ୍ଥା ହୋଇଥିଲଶ । ରାଜା ସ୍ୱୟଂ ନିଜ ହାତରେ ଉପଢ଼ୌକନ ଦେବାକୁ ଆସନରୁ ଉଠିଲେ । ପରିଚାରିକାମାନେ ସ୍ୱର୍ଣ୍ଣଥାଳି ଧରି ଅପେକ୍ଷା କରି ରହିଥିଲେ । ଏତିକିବେଳେ ଭିଡ଼ ମଧ୍ୟରୁ କେତେଜଣ ରମଣୀଙ୍କ ପାଟି ଶୁଭିଲା । ସେମାନେ ଅନ୍ୟ କେହି ନଥିଲେ, ବର୍ଷେ ହେବ ସେଠାରେ ବସତି ସ୍ଥାପନ କରିଥିବା ଏକଶତ ଦମ୍ପତିମାନଙ୍କ ମଧ୍ୟରୁ କେତେଜଣଙ୍କ ପତ୍ନୀ । ଦୁଇଜଣ ଦାସୀଙ୍କୁ ପଠାଗଲା ସେମାନଙ୍କ ଅଭିଯୋଗ ଶୁଣିବା ପାଇଁ । ଦାସୀମାନେ ସେମାନଙ୍କ ଆପତ୍ତି ଶୁଣି ଅମାତ୍ୟ ପ୍ରସନ୍ନଜିତ୍‌ଙ୍କୁ ଜଣାଇଲେ । ପ୍ରସନ୍ନଜିତ ରାଜାଙ୍କୁ ଅବଗତ କରାଇଲେ ।

ମଞ୍ଚସ୍ଥଳ ସ୍ତବ୍ଧ । ପୁରସ୍କାର ବିତରଣୀ ଉତ୍ସବ ବ୍ୟାହତ । ରାଜାଙ୍କ ମୁଖମଣ୍ଡଳ ବର୍ଣ୍ଣହୀନ । ସମ୍ବାଦ ଅନୁସାରେ ତିନିଜଣଙ୍କ ମଧ୍ୟରୁ ଦୁଇଜଣ ସଚ୍ଚୋଟ ବା ସଚ୍ଚରିତ୍ରର ନଥିଲେ । କ୍ରୋଧାନ୍ୱିତ ହୋଇପଡ଼ିଲେ ରାଜା । କ୍ଷୁବଧ୍ ହୋଇ ପୁରସ୍କାର ବଦଳରେ ଦଣ୍ଡବିଧାନ କରିବା ସକାଶେ ଆଦେଶ ଦେଲେ । ଦଣ୍ଡିତ ବ୍ୟକ୍ତି ଦୁଇଜଣଙ୍କର ଭୁଲ ହେଲା

: ସେମାନେ ଯଦିଓ ନିଜର ମାନସମ୍ମାନକୁ ଜଗି ନର୍ତ୍ତକୀମାନଙ୍କ ପାଖକୁ ଯାଉନଥିଲେ, ମାତ୍ର ସେଠାରେ ଅବସ୍ଥାପିତ ଅନ୍ୟର ପତ୍ନୀମାନଙ୍କ ସହିତ ଶାରୀରିକ ସମ୍ପର୍କ ରଖିଥିଲେ ।

ପୁରସ୍କାର ଉତ୍ସବରେ ତାତ୍ପର୍ଯ୍ୟ ବୁଝିପାରି ଉପସ୍ଥିତ ରମଣୀମାନଙ୍କ ମଧ୍ୟରୁ କେତେଜଣ ନିର୍ଭୀକା ମହିଳା ରହସ୍ୟ ଉଦ୍‌ଘାଟନ କରିଦେଲେ । ଘଟଣା ପ୍ରକୃତରେ ଏହିପରି ଘଟୁଥିଲା- କେହି କେହି ପୁରୁଷ ଯେତେବେଳେ ରାଜ ନର୍ତ୍ତକୀମାନଙ୍କୁ ନେଇ ଅନ୍ୟତ୍ର ଯାଉଥିଲେ ସେହି ମୌକାରେ ସେମାନଙ୍କ ଭାର୍ଯ୍ୟାମାନଙ୍କ ସହ ଏହି ଅଭିଯୁକ୍ତ ଆସାମୀ ଦୁଇଜଣ ଗୋପନରେ ସମ୍ପର୍କ ରଖୁଥିଲେ । ନିଜର ଅନୁପମ ସୁନ୍ଦରୀ ପତ୍ନୀ ଥାଇବି ପରନାରୀ ସହ ସଂଗ ସୁଖ ରଚିଥିବାରୁ ସେ ଦୁହେଁ ବି ଅନ୍ୟମାନଙ୍କ ପରି କାମୁକ ଶ୍ରେଣୀଭୁକ୍ତ ହୋଇଗଲେ ।

ଏତାଦୃଶ୍ୟ କାର୍ଯ୍ୟ ରାଜାଙ୍କୁ ବଡ଼ ବ୍ୟଥିତ କଲା । ଅବିବାହିତା ବା ଅନୂଢ଼ା ସହ ସମ୍ପର୍କକୁ ସେ ଯେତିକି ଗୁରୁତ୍ୱ ଦେଉନଥିଲେ ପରସ୍ତ୍ରୀ ସହ ଅବୈଧ ସମ୍ବନ୍ଧକୁ ତତୋଽଧିକ ଗର୍ହିତ ଅପରାଧ ବୋଲି ବିବେଚନା କରୁଥିଲେ । ଫଳତଃ ଶହେ ଶହେ ଥର ଲେଖାଏଁ ବେତ୍ରାଘାତ ପାଇଁ ଦଣ୍ଡବିଧାନ କଲେ । ପ୍ରଚଣ୍ଡ ପ୍ରହାରରେ ଆତୁର ଉକ୍ତ ଦୁଇ ଭ୍ରଷ୍ଟାଚାରୀ ପୁରୁଷ ଜୀବନରେ ଅନ୍ୟର ପତ୍ନୀ ଉପରେ କେବେ କୁଦୃଷ୍ଟି ନପକାଇବା ପାଇଁ ସେତେବେଳେ ସଂକଳ୍ପ କରୁଥିଲେ ।

ଶେଷରେ ଜଣେ କେବଳ ରହି ଯାଇଥିଲେ । ଏତେଜଣଙ୍କ ମଧ୍ୟରୁ ଜଣକୁ ମାତ୍ର ଆଦର୍ଶ ପରାୟଣ ଭାବେ ପାଇ ରାଜା ଯେତିକି ସନ୍ତୁଷ୍ଟ ହେବା କଥା ସେତିକି ହୋଇପାରିଲେ ନାହିଁ । ମର୍ମାହତ ଓ ବିମର୍ଷ ହୋଇ ଯାଇଥିଲେ ସେକ୍ଷଣି । ମନ୍ତ୍ରୀଙ୍କୁ ଉଦ୍ଦେଶ୍ୟ କରି ଏଣୁ ପ୍ରକାଶ କରିଥିଲେ ।

"ତମେ ଠିକ୍ କହିଥିଲେ ପ୍ରସନ୍ନଜିତ୍ । ଆଜିଠାରୁ ତମକୁ ମହାମନ୍ତ୍ରୀ ପଦରେ ଅଭିଷିକ୍ତ କଲି । ଆଜି ଜାଣିଲି ମୁଁ କେବଳ ନୁହେଁ- ପ୍ରତ୍ୟେକ ପୁରୁଷ ଲମ୍ପଟ, ଦୁଶ୍ଚରିତ୍ର, ସ୍ତ୍ରୈଣ । ଖୁବ୍ କ୍ୱଚିତ୍ ଲୋକ ମର୍ଯ୍ୟାଦାବନ୍ତ ଓ ଜିତେନ୍ଦ୍ରୀୟ । ସେମାନଙ୍କ ସଂଖ୍ୟା ନିଶ୍ଚିତ ଭାବେ ଅତି ନଗଣ୍ୟ । ମୁଁ, ମଣିଷର ପ୍ରକୃତ ଚେତନା ସ୍ତରକୁ ଛୁଇଁ ପାରିନଥିବାରୁ ଏତେଦିନ ହେବ ଅସହ୍ୟ ଯନ୍ତ୍ରଣା ଭୋଗୁଥିଲି । ମନ୍ତଃସ୍ତାପ ମଧ୍ୟ ହେଉଥିଲା ଯେ ମୁଁ କେବଳ ନାରୀଲୋଭୀ ମଣିଷ ଅନ୍ୟମାନେ ସବୁ ନିରାସକ୍ତ, ନିର୍ମୋହ ସୁପୁରୁଷ । ଧାରଣା ମୋର ଭ୍ରାନ୍ତ ଥିଲା । ସେ ଧାରଣା ଆଜି କଟିଗଲା । ମନଟା ପ୍ରଫୁଲ୍ଲ ଲାଗୁଛି ଏବେ !"

ରାଜାଙ୍କ ମନ୍ତବ୍ୟ ଶୁଣି ଆଉ ଦୁଇପଦ ଯୋଡ଼ିବାକୁ ମନ୍ତ୍ରୀ ଆଗଭର ହେଲେ, ମହାରାଜ ! ମଣିଷର ଅତିନ୍ଦ୍ରିୟ ସ୍ତରରେ ଏକ ସୂକ୍ଷ୍ମ ଚେତନା ଅଛି । ସେ ଚେତନା ଭୋଗ ବିଳାସୀ ତା' ପାଖରେ ସ୍ନେହ, ପ୍ରେମ ଆଦର୍ଶ ଚରିତ୍ରବତ୍ତା ସବୁକିଛି ଗୌଣ । ସମ୍ଭୋଗ ଲାଳସା ହେଉଛି ମୁଖ୍ୟ ବା ଶ୍ରେଷ୍ଠ । ନାରୀର ଦେହପାଇଁ ସେ ହୁଏ ମତୁଆଲା, ଉନ୍ମାଦ । ସେ ଉନ୍ମାଦତାର ସୀମା କିଛି ନଥାଏ ତାହା ଅସୀମିତ । ଏଥିଯୋଗୁଁ ମଣିଷ ନୀଚରୁ ନୀଚତର କର୍ମ କରିବାକୁ ମଧ୍ୟ ପଶ୍ଚାଦପଦ ହୁଏନାହିଁ । ମନ୍ତ୍ରୀଙ୍କ ଠାରୁ ମୁହଁ ବୁଲାଇ ଶେଷ ବ୍ୟକ୍ତିକୁ ଚାହିଁଲେ ରାଜା ।

ଏଇ ଗୋଟିଏ ବ୍ୟକ୍ତି କଳଙ୍କମୁକ୍ତ । ଚରିତ୍ରବାନ ଓ ଆଦର୍ଶବାଦୀ । ନିଜକୁ ଶୁଦ୍ଧ, ପବିତ୍ର, ଏକ ପତ୍ନୀବ୍ରତଧାରୀ ଭାବେ ପ୍ରମାଣିତ କରିଛନ୍ତି । ଶହେ ଜଣଙ୍କରୁ ଜଣଙ୍କୁ ସତ୍‌ପୁରୁଷ ରୂପେ ପାଇ ରାଜା ପୁରସ୍କାର ରାଶି ଦୁଇସହସ୍ର ସ୍ୱର୍ଣ୍ଣ ମୁଦ୍ରାକୁ ବଢ଼ାଇଦେଲେ ।

ପୁରସ୍କୃତ ବ୍ୟକ୍ତି ସହର୍ଷ ବିଦାୟ ନେବାପରେ ଅନ୍ୟମାନେ ମଧ୍ୟ ରାଜ ପରିଷଦ

ଛାଡ଼ିଲେ । ଏ ଅଭିନବ ଅବସାନ ଘଟିଲା ସେଇଠି ।

ପୂର୍ବରୁ ମନ୍ତ୍ରୀଙ୍କର ଏ ଅଭିନବ ପରୀକ୍ଷା ସମ୍ପର୍କରେ କେହି ବୁଝିନଥିଲେ । ଶେଷକୁ ପ୍ରାୟେ ସମସ୍ତେ ସମଗ୍ର କାର୍ଯ୍ୟକ୍ରମଟିକୁ ଉପଲବ୍ଧି କରିପାରିଲେ । ତେଣୁ ଫେରିବା ସମୟରେ କେତେକ ଲୋକ ଚିନ୍ତା କରିପାରିଲେ । ରାଜାଙ୍କର ଉଦ୍ଦେଶ୍ୟ ଯଦି ଆଗରୁ ବୁଝିଥାଆନ୍ତେ, ସେମାନେ ବି ଏମିତି ସଚ୍ଚରିତ୍ରତାର ପରିଚୟ ଦେଇପାରିଥାନ୍ତେ ! ପରସ୍ତ୍ରୀକୁ ଆଡ଼ ଆଖିରେ ଆଦୌ ଚାହିଁ ନଥାନ୍ତେ । ଅଟଳ ଭୀଷ୍ମ ପ୍ରତିଜ୍ଞା କରି ନିଜ ନିଜର ଚରିତ୍ରବତ୍ତାର ପରିଚୟ ଦେଇ ପାରିଥା'ନ୍ତେ ।

ଏପଟେ ପୁରସ୍କୃତ ବ୍ୟକ୍ତିଜଣଙ୍କ ଗହଳି ମଧ୍ୟରେ ତାଙ୍କ ପତ୍ନୀଙ୍କୁ ଖୋଜୁଥିଲେ । ଆକସ୍ମିକ ତାଙ୍କୁ ଅନତିଦୂରରେ ପାଇ ସେ ସ୍ୱର୍ଣ୍ଣପୁତୁଳୀଟିକୁ ଧରାଇ ଉଲ୍ଲାସରେ ଆଲିଙ୍ଗନ କରି ପକାଇଲେ । ନିବିଡ଼ ବନ୍ଧନୀ ମଧ୍ୟରେ ପତ୍ନୀକୁ ଜାବୁଡ଼ି ଧରି ସେ କହିଲେ, "ପ୍ରିୟେ ! ନିଅ ଏ ସ୍ୱର୍ଣ୍ଣମୁଦ୍ରା । ଏତେ ଅର୍ଥ ଆମେ ସାତଜନ୍ମରେ ସୁଦ୍ଧା ପାଇପାରିନଥାଆନ୍ତେ ।

ଉଲ୍ଲସିତ ପତି ତାଙ୍କ ପତ୍ନୀଙ୍କଠାରୁ କୌଣସି ପ୍ରତିକ୍ରିୟା ନପାଇ ଫାଶମୁକ୍ତ କରି ଚାହିଁଲେ । ପତ୍ନୀଙ୍କ ଆଖିରେ ଅବାରିତ ଅଶ୍ରୁ । ନାସିକା ଅଗ୍ରରେ ଅସୁମାରି କମ୍ପନ । ଛାତିରେ ନିଃଶ୍ୱାସ ପ୍ରଶ୍ୱାସର ଗତି ଘନ ଘନ । ଏତେଗୁଡ଼ିଏ ରତ୍ନ ପାଇ ମଧ୍ୟ ସେ ଖୁସି ନଥିଲେ ।

ସ୍ତମ୍ଭୀଭୂତ ହୋଇଗଲେ ବ୍ୟକ୍ତିଜଣକ । ସ୍ଥାଣୁ ପରି ଛିଡ଼ା ହୋଇ ରହିଥିଲେ ସେ । ପତ୍ନୀଙ୍କର ଦାରୁଣ ତାଚ୍ଛଲ୍ୟ ତାଙ୍କୁ ଉପହାସ କରବାକୁ ଲାଗିଲା । ବହୁଦିନରୁ ଛାତିରେ ଜମାଟ ବାନ୍ଧିଥିବା ବିଦ୍ରୂପ ଯେମିତି ଏଇ ମୁହୂର୍ତ୍ତରେ ପୃଥିବୀଯାକର ବାଧାବିଘ୍ନକ ଉଲଂଘନ କରି ବିର୍ଷିଯିବ ।

"ମୋର ଦରକାର ନାହିଁ ଧନ ଦୌଲତ- ଲକ୍ଷ ଲକ୍ଷ ସ୍ୱର୍ଣ୍ଣମୁଦ୍ରା । ମୋର ଦରକାର ଜୀବନ । ମୋର ଦରକାର ପ୍ରେମ, ପ୍ରଣୟ, ସୁଖ, ଦୈହିକ ତୃପ୍ତି । ମୁଁ ଚାହେଁ ପୁରୁଷର ପ୍ରଚଣ୍ଡ ପୁରୁଷତ୍ୱ । ମୁଁ ଚାହେଁ କାମନା ବାସନାର ଜତୁଗୃହ । ଯେଉଁଠି ପୋଡ଼ିଯିବାରେ, ଧ୍ୱଂସ ହୋଇଯିବାରେ ଥାଏ ଆନନ୍ଦ ।" ନିଃସନ୍ତାନବତୀ ନାରୀଟିର ମୂର୍ଚ୍ଛନା ବିଦାରୀ କେତେ ବର୍ଷ ଧରି ଅବରୁଦ୍ଧ ଥିବା ବିଦ୍ରୋହ ଯେମିତି ମୁକ୍ତି ପାଇଁ ରାହା ଖୋଜୁଥିଲା ।

ତୃପ୍ତି ପାଇଁ ମୁକ୍ତିର ରୂପରେଖ ସତେ କେଡ଼େ ଭୟାବହ ! କେଡ଼େ ପ୍ରଳୟଙ୍କାରୀ ! ଅତୃପ୍ତ ଅବଳାଟିର ଇଚ୍ଛା ପାଖରେ ପୃଥିବୀ ଗୋଟାକର ଐଶ୍ୱର୍ଯ୍ୟ ପାଉଁଶ ପରି ମନେ ହେଉଥିଲା । ସ୍ୱର୍ଣ୍ଣମୁଦ୍ରାତକ ଅଲୋଡ଼ା ଲାଗୁଥିଲା ।

ଅସହାୟ ହୋଇପଡ଼ିଲେ ନଂପୁଂସକ ବ୍ୟକ୍ତିଟି । ନିରୁପାୟ ହୋଇ ଚାହିଁଲେ ଚତୁଃପାର୍ଶ୍ୱକୁ । ଅଦୂରରେ ପତ୍ନୀ ଲହରେଇ ଲହରେଇ ବିଳାପ କରୁଥିଲେ । ସ୍ୱର୍ଣ୍ଣପୁତୁଳୀଟି ତଳେ ଖସି ପଡ଼ିଥିଲା । ତାଙ୍କର କ୍ଳୀବତ୍ୱ ଅଟ୍ଟହାସ୍ୟ କରି ପୁଣି ଚେତାଇ ଦେଉଥିଲା, "ତମେ ନଂପୁସକ-ତମେ ପୌରୁଷହୀନ ! ତମର-କାମନା ନାହିଁ ବାସନା ନାହିଁ । ତମେ ଉତ୍ତେଜନାହୀନ ଗୋଟେ ତୁଷାରଖଣ୍ଡ ।"

ସମବେତ ଜନତା ଅପସରି ଯାଇଥିଲେ । ସ୍ଥାନଟି ଶୂନ୍ୟ ହୋଇ ଆସିଥିଲା । ପତିବ୍ରତା ନାରୀଟିର କରୁଣ ଗାଥା ପଦାକୁ ଆସିବା ବଦଳରେ ପୁନଶ୍ଚ ଛାତିତଳେ ଲୁଚିଯାଇଥିଲା । ଯାହାର ଲେଶମାତ୍ର କମ୍ପନକୁ ମହାରାଜା କି ମହାମନ୍ତ୍ରୀ ଅବଗତ ହୋଇ ପାରିନଥିଲେ ।

